# ଅନାଗତ ଫାଲ୍‌ଗୁନ

**ଅଖିଳ ମୋହନ ପଟ୍ଟନାୟକ**

ପ୍ରକାଶକ
ଲାର୍କ ବୁକ୍‌ସ
ସୁବର୍ଣ୍ଣରେଖା ଚାମ୍ବର୍ସ
ଭୌମ ନଗର
ଭୁବନେଶ୍ୱର - ୭୫୧ ୦୦୧

ପ୍ରଥମ ପ୍ରକାଶ - ୧୯୮୨
ଦ୍ୱିତୀୟ ପ୍ରକାଶ - ୨୦୦୦

ପ୍ରଚ୍ଛଦ
ଅସୀମ ବସୁ

ଟାଇପ ସେଟିଂ ଓ ମୁଦ୍ରଣ
ସ୍ପେକ୍‌ଟ୍ରମ୍ ପ୍ରିଣ୍ଟର୍ସ
୭୧ ଏ, ଫରେଷ୍ଟ ପାର୍କ
ଭୁବନେଶ୍ୱର - ୭୫୧୦୦୯
ଫୋନ୍ : ୦୬୭୪ - ୫୩୦୨୮୨

ଅଶୀ ଟଙ୍କା ମାତ୍ର

**Anagata Phalguna**
Written by
**Akhil Mohan Pattanaik**

Published by
**LARK BOOKS**
Subarnarekha Chambers
Bhauma Nagar,
Bhubaneswar -751 001

First Edition - 1982
Second Edition - 2000

Cover
**Asim Basu**

Type Setting & Printing
**Spectrum Printers**
71A, Forest Park
Bhubaneswar-751009
Phone : 0674 - 530282

Rupees Eighty only

ISBN - 81-7375-071-8

## ପ୍ରଥମ ପ୍ରକାଶ ସମୟରେ



ଜନ୍ମ - ତା ୧୮।୧୨।୧୯୨୭,     ମୃତ୍ୟୁ - ତା ୨୯।୧୧।୧୯୮୨

ଯେଉଁମାନେ ଅଖିଳବାବୁଙ୍କ ସଂସ୍ପର୍ଶରେ ଆସିଛନ୍ତି ଓ ଯେଉଁମାନେ ତାଙ୍କ ରଚନା ସହିତ ପରିଚିତ ସେମାନଙ୍କ ପକ୍ଷରେ ତାଙ୍କର ଅକାଳ ବିୟୋଗ ଏକ ମର୍ମନ୍ତୁଦ ସ୍ମୃତି ହୋଇ ରହିବ । କାଳକ୍ରମେ ତାଙ୍କୁ ବ୍ୟକ୍ତିଗତଭାବେ ଚିହ୍ନିଥିବା ଲୋକଙ୍କ ସଂଖ୍ୟା କମିଆସିବ, କିନ୍ତୁ ତାଙ୍କ ପ୍ରତିଭାକୁ ଚିହ୍ନିବା ଲୋକଙ୍କ ସଂଖ୍ୟା ବଢ଼ି ଚାଲିବ । ଅଖିଳବାବୁ ସାହିତ୍ୟିକ ପ୍ରସିଦ୍ଧି ପାଇଁ କୌଣସିକାଳେ କିଛି ହେଲେ ପ୍ରଚେଷ୍ଟା କରି ନ ଥିଲେ; ସେତେବେଳେ ଓଡ଼ିଆ ସାହିତ୍ୟରେ ଆଲୋଡ଼ନ ସୃଷ୍ଟି କରିଥିବା ତାଙ୍କର 'ମନସ୍ତାତ୍ତ୍ୱିକର ଚିଠି' ପ୍ରାୟ ପଚିଶ ବର୍ଷ ଯାଏଁ ପୁସ୍ତକାକାରରେ ପ୍ରକାଶିତ ହୋଇ ନଥିବା ତାର ପ୍ରମାଣ । ସେ ଚିଠିଗୁଡ଼ିକୁ ତାଙ୍କ ପ୍ରଦତ୍ତ ଶିରୋନାମା ଦେଇ ଆଜି ପ୍ରକାଶ କଲାବେଳେ ଆମେ ଆଶା କରୁଛୁ ଯେ ବହିଟି ଅସଂଖ୍ୟ ପାଠକଙ୍କୁ ଓଡ଼ିଆ ସାହିତ୍ୟଜଗତରେ ଅଖିଳବାବୁଙ୍କ ଆବିର୍ଭାବର ତାତ୍ପର୍ଯ୍ୟ ସହିତ ପରିଚିତ କରାଇବ । ସେ ଚିଠିଗୁଡ଼ିକର ପ୍ରାୟ ପଚିଶବର୍ଷ ପରେ, ମୃତ୍ୟୁର ତିନିଦିନ ପୂର୍ବରୁ, ସେ ତାଙ୍କର ମାନସୀକୁ ଶେଷଚିଠିଟି ଲେଖିଥିଲେ; ସେଇ ଶେଷଚିଠିଟି ଏ ବହିର ମୁଖବନ୍ଧ ।

ଲାର୍କ ବୁକ୍ସ

## ଦ୍ୱିତୀୟ ପ୍ରକାଶ ସମୟରେ

'ଅନାଗତ ଫାଲ୍‌ଗୁନ'ର ପ୍ରଥମ ସଂସ୍କରଣ ଅନେକ ଦିନରୁ ସରିଗଲାଣି । ଦ୍ୱିତୀୟ ସଂସ୍କରଣର ପ୍ରକାଶନରେ ଅକ୍ଷମଣୀୟ ବିଳମ୍ବ ଘଟିଛି । ଏ ବିଳମ୍ବ ପାଇଁ ପ୍ରକାଶକ ଦୁଃଖିତ, ଅନୁତପ୍ତ ।

ମୃତ୍ୟୁର ତିନିଦିନ ପୂର୍ବରୁ ଅଖିଳବାବୁ ମୋ ପାଖକୁ ଯେଉଁ ଚିଠିଟି ପଠାଇଥିଲେ, ତାହା ପ୍ରକୃତରେ ଥିଲା ତାଙ୍କର ଶେଷ ଚିଠି — ତାଙ୍କର ମାନସୀ ସୁଜାତାଙ୍କୁ । ସେଇ ଚିଠିଟି ପ୍ରଥମ ସଂସ୍କରଣର ମୁଖବନ୍ଧ ଭାବେ ସ୍ଥାନିତ ହୋଇଥିଲା । ଏ ସଂସ୍କରଣରେ ଚିଠିଟି ଯଥାସ୍ଥାନରେ ରହିଛି — ଶେଷପୃଷ୍ଠାରେ ।

ପ୍ରତ୍ୟେକଟି ଚିଠି ସ୍ୱୟଂସମ୍ପୂର୍ଣ୍ଣ । ଅନୁଶୀଳନ ଓ ଭାବାବେଶର ସମ୍ମିଶ୍ରଣ ପ୍ରତ୍ୟେକ ଚିଠିର ନିଜସ୍ୱ । ଯଦି ଚିଠିଗୁଡ଼ିକ ଭିତରେ କୌଣସି ଯୋଗସୂତ୍ର ଥାଏ, ତାହା ହେଉଛି ସତ୍ୟରେ ଉପନୀତ ହେବାର ଆକୁଳତା । ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଚିଠିଗୁଡ଼ିକର ଆକର୍ଷଣ, କିନ୍ତୁ ଏକମାତ୍ର ଆକର୍ଷଣ ନୁହେଁ । କଥନ ଶୈଳୀ, ଶବ୍ଦବିନ୍ୟାସ, ଚେତନାର ରହସ୍ୟମୟ ଦିଗ୍‌ବିଦିଗରେ ଅକ୍ଲାନ୍ତ ପର୍ଯ୍ୟଟନ ଫଳରେ ଚିଠିଗୁଡ଼ିକ ଅବିସ୍ମରଣୀୟ, ଓଡ଼ିଆ ସାହିତ୍ୟରେ ଅନନ୍ୟ । ଭାଷା ଆପାତତଃ ଗଦ୍ୟ ସିନା, କବିତା ପରି ଅନ୍ତରୀଣ ଘଟଣାର ବର୍ଣ୍ଣନା ତାର ମୁଖ୍ୟ ଉଦ୍ଦେଶ୍ୟ, କବିତାସୁଲଭ ଉପାୟ ତାର ଉପାୟ ।

ତାଙ୍କ ମତରେ ଭଲ ପାଇବାଟା 'ଏକରକମ ଦ୍ୟୁତକ୍ରୀଡ଼ା' । 'ତା ପୁଣି ଊର୍ଣ୍ଣନାଭ ପରି ଅତି ସୂକ୍ଷ୍ମ ଆଉ ଭଙ୍ଗୁର । ତାକୁ କେନ୍ଦ୍ର କରି ବିଶେଷ ଅନୁଶୀଳନ ନ କରିବା ବିଜ୍ଞତା ।' ତାଙ୍କର ଏଇ ଭଲ ପାଇବା 'ଏକ ସର୍ତ୍ତହୀନ ପ୍ରୀତି' — 'ଦୁଇଟି ଅଜଣା ଭିନ୍ନ ଅରଣ୍ୟ ପକ୍ଷୀଙ୍କର ଏଇ ସହାବସ୍ଥାନ ପରି । ଏଇ ଭଲପାଇବା ପଛରେ ବିବାହ କରିବା ବା ଜଣେ ଅନ୍ୟର ଉପଗ୍ରହ ପରି ତାର ଆଦର୍ଶର ଅନୁଧାବନ କରିବା ପରି ସର୍ତ୍ତ ବା ଚୁକ୍ତି ନଥାଏ: ତା ତ ଭଲ ପାଇବା ନୁହେଁ; ତା ବ୍ୟବସାୟ ।' ବ୍ୟବସାୟିକ ମନୋବୃତ୍ତିଠାରୁ ଯୋଜନ ଯୋଜନ ଦୂରରେ ଥିବା ଅଖିଳବାବୁ ଏ ତତ୍ତ୍ୱ ବିନା ଆଉ କେଉଁ ତତ୍ତ୍ୱ ଉପସ୍ଥାପନା କରି ପାରିଥାଆନ୍ତେ ?

ଆଉ ଗୋଟିଏ ବକ୍ତବ୍ୟ ହେଲା ସାର୍ଥକ ଜୀବନର ସଂଜ୍ଞା । କ'ଣ ତାହା ? ' ଗୌରବର ପାହାଚ ପରେ ପାହାଚ ଚଢ଼ି ପାରିଲେ ଜୀବନର ପୂର୍ଣ୍ଣତା ଆସେ, ମାତ୍ର ସେ ପାହାଚର ଅନ୍ତ ନାହିଁ ଏବଂ ସେଇଥିପାଇଁ ସମସ୍ତଙ୍କ ମଧ୍ୟରେ ପ୍ରତିଯୋଗୀତା' — ଏହି ପରମ୍ପରାଗତ ବିଶ୍ୱାସକୁ ନାକଚ୍ କରୁଥିବା ଅଖିଳବାବୁ ଏହି ଅନ୍ତଃସାରଶୂନ୍ୟ ପ୍ରତିଯୋଗୀତାର ମର୍ମ ବୁଝନ୍ତି । ତାଙ୍କର ବିଶ୍ୱାସ ଯେ 'ଜୀବନଟାକୁ ରାଜରାସ୍ତାରେ

ଫିଙ୍ଗିଦେଲେ ତାହା ନାନାବିଧ ନୂତନ ଅଭିଜ୍ଞତା ଦ୍ୱାରା ପୁଷ୍ଟ ହୋଇ ଫେରିଆସି ପାରିବ ।’ ସଂକ୍ଷେପରେ ତାଙ୍କ କହିବା କଥା ହେଲା — ‘ମୋଟ ଉପରେ ଜୀବନଟାକୁ ଅନୁଭବ କର, ଉପଭୋଗ କର, ପୂରାପୁରି ଫାଷ୍ଟହାଣ୍ଡ, ଅନ୍‌ଇନ୍‌ହିବିଟେଡ୍‌’ ଭାବେ ।

ଶେଷ ଚିଠିଟି ଅନ୍ୟ ବାରଟି ଚିଠିମାନଙ୍କଠାରୁ ପୃଥକ୍ । ବୋଧହୁଏ ‘ଦ୍ୱାଦଶୀ’ ପରେ ପ୍ରାୟ ପଚିଶ ବା ତିରିଶ ବର୍ଷ ଉତ୍ତାରେ ଲେଖାଯିବାରୁ । ସେଥିରେ ନିଜକୁ ବୁଝାଇବାର, ଅନ୍ୟ କାହାକୁ ବୁଝିବାର ସାମାନ୍ୟତମ ପ୍ରଚେଷ୍ଟା ନାହିଁ । ଅଛି କେବଳ ଦୀର୍ଘଶ୍ୱାସଟିଏ — ଖୁବ୍ ବାଙ୍ମୟ ଦୀର୍ଘଶ୍ୱାସଟିଏ ।

ଏ ଚିଠି ଗୁଡ଼ିକ ପ୍ରଥମେ ୧୯୮୨ ମସିହାରେ ଏବଂ ଦୀର୍ଘ ଅଠର ବର୍ଷ ପରେ ପୁଣି ଥରେ ପ୍ରକାଶ କରିବାର ଏକମାତ୍ର ଅଦମ୍ୟ କାରଣ ଏହା, — ପ୍ରାୟ ପଚାଶବର୍ଷ ତଳେ କଲେଜରେ ପଢ଼ିବା ସମୟରେ ଅପରିପକ୍ୱ ମାନସିକ ସ୍ତରରେ ଥାଇ ଯୁଦ୍ଧା ମତେ ଯେଉଁ ପ୍ରକାର ଆନନ୍ଦ ଓ ଶିହରଣ ଲାଗୁଥିଲା, ଏବେ ପରିଣତ ବୟସରେ ମଧ ତାହା ହିଁ ମିଳୁଛି ଏବଂ ସେଇଥିପାଇଁ ବାରମ୍ବାର ପଢ଼ିବାକୁ ଇଚ୍ଛା ହେଉଛି । ଏ ଅନୁଭୂତି ନିଶ୍ଚିତ ଭାବେ କେବଳ ମୋର ନୁହେଁ, ଆହୁରି ଅନେକଙ୍କର ।

ଅନ୍ୟ କାହା କଥା କହି ପାରିବିନି, ମାତ୍ର ଶିଳ୍ପୀ ଅସୀମ ବସୁ, ଯେ କି ଅଖିଳବାବୁଙ୍କ ସହିତ ବେଶି ଘନିଷ୍ଠ ଥିଲେ, ତାଙ୍କର ଜୀବନ-ଦର୍ଶନକୁ ଠିକ୍ ଠିକ୍ ବୁଝିଛନ୍ତି । ସେଇଥିପାଇଁ ବେପରୱା, ସାଲିସ ବିହୀନ ଓ ବୋହେମିଆନ୍ ଭାବେ ଜୀବନଟାକୁ ଉପଭୋଗ କରିବାର ଦର୍ଶନକୁ ସେ ଠିକ୍ ଭାବରେ ପ୍ରକାଶ କରିପାରିଛନ୍ତି ତାଙ୍କ ତୁଳୀରେ । ଫାଷ୍ଟହାଣ୍ଡ, ଅନ୍‌ଇନ୍‌ହିବିଟେଡ୍ ଭାବେ ଜୀବନକୁ ଉପଭୋଗ କଲାପରେ ତୁମେ ତାକୁ ଫିଙ୍ଗି ଦେଇପାର ଗୋଟିଏ କାଗଜ ଫର୍ଦ୍ଦକୁ ମୋଡାମୋଡି କରି ଅଳିଆଗଦାକୁ ଫିଙ୍ଗିଦେଲା ପରି । ଅସୀମ ବାବୁଙ୍କୁ ଅସୀମ ଧନ୍ୟବାଦ ଯେ ସେ ଏଇ ଭାବନାକୁ ସଠିକ୍ ରୂପାୟିତ କରି ପାରିଛନ୍ତି ବହିର ପ୍ରଚ୍ଛଦରେ ଓ ପ୍ରତ୍ୟେକ ଚିଠିର ପ୍ରାରମ୍ଭରେ ।

ମହେନ୍ଦ୍ର ମିଶ୍ର

# ଭୂମିକା

କାଲିଭଳି ଲାଗୁଛି । ମହେନ୍ଦ୍ର ବାବୁ ଓ ଅସୀମ ବାବୁ ଆସି ଆମଘରେ ମନସ୍ତାତ୍ତ୍ୱିକର ଚିଠି ଗୁଡାକ ବହି ଆକାରରେ ପ୍ରକାଶ କରିବା ପାଇଁ ଅଖିଳ ବାବୁଙ୍କ ସଙ୍ଗେ କଥାବାର୍ତ୍ତା କରୁଥିଲେ । ବହିର ନାମକରଣ, କଭର ସ୍କେଚ ଓ ଶୀଘ୍ର ଯେପରି ପ୍ରକାଶ ହୁଏ ସେଥିଲାଗି ଚା' ମାଧ୍ୟମରେ ଆସର ବେଶ୍ ଜମି ଉଠିଥିଲା । ଅଖିଳ ବାବୁ ହଠାତ୍ ଅସୀମବାବୁଙ୍କୁ କହିଲେ ଅସୀମ ତମେ ସ୍କେଚ୍ ଗୁଡା ଶୀଘ୍ର କରି ଦେଲେ ମହେନ୍ଦ୍ର ବାବୁ ଅନ୍ୟାନ୍ୟ ପ୍ରକାଶନ କାର୍ଯ୍ୟ ତ୍ୱରାନ୍ୱିତ କରି ନେବେ । ବହିର ନାଁ ରଖିବ 'ଅନାଗତ ଫାଲଗୁନ' । ବହିଟା କେମିତି ଅତିଶୀଘ୍ର ପ୍ରକାଶ ହେବ ସେଥିପାଇଁ ସେ ଖୁବ୍ ବ୍ୟସ୍ତ ହେଉଥିଲେ ହୁଏତ ଜୀବନ ଦୀପ ଲିଭି ଲିଭି ଆସୁଥିଲା ବୋଲି ସେ ଏତେ ବ୍ୟସ୍ତ ଥିଲେ । ଏ କଥାପୋକଥନ ୧୯୮୧ ମସିହାର ପ୍ରଥମାର୍ଦ୍ଧର କଥା ।

ଲେଖାଗୁଡ଼ା ଅନେକ ପୁରୁଣା ଓ ଅଖିଳ ବାବୁଙ୍କର ଛାତ୍ରାବସ୍ଥାର ଲେଖା । ସେଇ ସମୟର ସାମାଜିକ ଓ ରାଜନୈତିକ ଚିତ୍ର ଓ ବିଭିନ୍ନ ସମସ୍ୟାର ଆଭାସ ମିଳେ ଲେଖା ମାଧ୍ୟମରୁ । ଲେଖକର ବେଳେବେଳେ ଖିଆଲ୍ ହୁଏ ଛଦ୍ମ ନାମରେ ଲେଖିବା ପାଇଁ । ଶୋଭନା ପଟ୍ଟନାୟକ ଛଦ୍ମ ନାମରେ ଅଳ୍ପ କିଛି କବିତା ୧୯୪୭-୪୮ରେ ବିଭିନ୍ନ ପତ୍ରିକାରେ ପ୍ରକାଶିତ ହୋଇଥିଲା । ଦ୍ୱିତୀୟ ଛଦ୍ମ ନାମ ହେଲା 'ମନସ୍ତାତ୍ତ୍ୱିକ'। ମନସ୍ତାତ୍ତ୍ୱିକର ଚିଠି ମାଧ୍ୟମରେ ପ୍ରଥମା, ଦ୍ୱିତୀୟା, ତୃତୀୟା ଆଦି କ୍ରମରେ ବିଭିନ୍ନ ପତ୍ରିକାରେ ମାନସୀ ସୁଜାତା ପାଖକୁ କଳ୍ପନା ବିଳାସୀଙ୍କର ଏକାନ୍ତ ବ୍ୟକ୍ତିଗତ ଚିଠି । ପତ୍ରିକା ପ୍ରକାଶକ ବ୍ୟତୀତ ଅନ୍ୟ କେହି ଲେଖକଙ୍କୁ ଜାଣିବା ସମ୍ଭବ ନଥିଲା । ଚିଠି ଗୁଡ଼ା ଅତି ରୋମାଞ୍ଚକର ଓ ବିଭିନ୍ନ ସମସ୍ୟା ଉପରେ ଆଧାରିତ । ମନସ୍ତାତ୍ତ୍ୱିକ କିଏ ଏ ପ୍ରଶ୍ନ ପ୍ରତ୍ୟେକ ବିଦଗ୍ଧ ପାଠକ ମନରେ ଉଠୁଥିଲା । ହଠାତ୍ ଗୋଟାଏ ସଂଖ୍ୟାରେ ପ୍ରକାଶକ ଭୁଲକ୍ରମେ ଲେଖା ଶେଷରେ ମନସ୍ତାତ୍ତ୍ୱିକ ଶ୍ରୀ ଅଖିଳ ମୋହନ ପଟ୍ଟନାୟକ ବୋଲି ପ୍ରକାଶ କରିଦେଲେ । ବେଶ୍ କିଛି ଚିଠି ପାଠକପାଠିକା ମାନଙ୍କ ପାଖରୁ ଶୁଭେଚ୍ଛା ବାର୍ତ୍ତା ବହନ କରି ଆସିଥିଲା ।

ଏହା ପରର ଛଦ୍ମନାମ ହେଲା ଶ୍ରୀ କଚ୍ଛପ ଓ ଲେଖାର ଶିରୋନାମା କଚ୍ଛପୀୟ । ଜୀବନର ଶେଷ ପର୍ଯ୍ୟନ୍ତ ସେ କଚ୍ଛପୀୟ ଲେଖୁଥିଲେ 'ସମାବେଶ'ର

ପ୍ରତି ସଂଖ୍ୟାରେ । ସପ୍ତମ ବା ଅଷ୍ଟମ ଚିଠି ପରଠାରୁ ମନସ୍ତାତ୍ୱିକର ଚିଠି ପ୍ରାୟ ଦୀର୍ଘ ବାରବର୍ଷ ଆଉ ଲେଖା ହୋଇ ନଥିଲା ।

ଆମେ ଭୁବନେଶ୍ୱରରେ ଥାଉ । ସେତେବେଳେ ଅଖିଳ ବାବୁ ପୂରାପୂରି ସଂସାରୀ । ସାମୟିକ ଲେଖା ଲେଖି ଚାଲିଥାଏ କିନ୍ତୁ ମନସ୍ତାତ୍ୱିକର ଚିଠି ଆଉ ଲେଖା ହୋଇ ନଥାଏ । ସାହିତି୍ୟକ ଓ ପାଠକ ବନ୍ଧୁ କେତେଜଣଙ୍କର ବାରମ୍ବାର ଅନୁରୋଧକ୍ରମେ ପୁଣିଥରେ ମନସ୍ତାତ୍ତ୍ୱିକ ପ୍ରିୟତମା ସୁଜାତା ପାଖକୁ ଚିଠି ଲେଖିଲେ । ବାରଟି ଚିଠିରେ ଲେଖା ଶେଷ ହୋଇଛି । କିଛି ଦିନ ତଳେ ଅନାଗତ ଫାଲ୍‌ଗୁନ ଆଉଥରେ ପଢ଼ିଲି କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ମୁଁ ଜାଣି ପାରିଲି ନାହିଁ କେଉଁଟା ବାରବର୍ଷ ପରର ଲେଖା । ଲେଖା ମାଧ୍ୟମରେ ଲେଖକ ଚରିତ୍ରର ବିଭିନ୍ନ ଦିଗର ପରିପ୍ରକାଶ ହୁଏ । ମାନସୀ ସୁଜାତା ଅତି ଭାଗ୍ୟବତୀ, ଜଣେ ଦରଦୀ ଲେଖକ ପାଖରୁ ମର୍ମସ୍ପର୍ଶୀ ଚିଠିପାଇବା କ'ଣ କମ୍ ସୌଭାଗ୍ୟର କଥା !

ପୁଣି ଥରେ ପୂର୍ବ କଥାକୁ ଫେରି ଯାଉଚି । ବହି ପ୍ରକାଶ କାମରେ ମହେନ୍ଦ୍ର ବାବୁ ନିଷ୍ଠାର ସହିତ ଲାଗି ପଡିଲେ । ଯେତେ ଶୀଘ୍ର ଯେମିତି ହେଲେ ବହିଟା ଛପା ହେବା ଦରକାର କାରଣ ଅଖିଳ ବାବୁଙ୍କର ଚାଗିଦା । ଦୈବ ଦୁର୍ଯୋଗକୁ ହଠାତ୍ ଅଖିଳ ବାବୁ ଭୀଷଣ ଅସୁସ୍ଥ ହୋଇ ପଡ଼ିଲେ । ଅପରେଶନ୍ ପାଇଁ କଟକ ଯିବା ନିତାନ୍ତ ଆବଶ୍ୟକ । ନଭେମ୍ବର ସତେଇଶ ତାରିଖ ଶନିବାର ସକାଳୁ ପ୍ରସ୍ତୁତ ହେଲେ । ଆଠଟା ପୂର୍ବରୁ ବାହାରିବାକୁ ହେବ । ବଡ଼ ପୁଅ ବୁଲୁ tribal tour ରୁ ଫେରି ଥାଏ । ଛ' ମାସ ହେବ ନବଗୁଞ୍ଜର ଟ୍ରାଭେଲ୍ସ ବ୍ୟବସାୟ ସଂସ୍ଥା ଆରମ୍ଭ କରିଥାଏ । ସାନପୁଅ ଫେଲୁ, ମୁଁ, ଡ୍ରାଇଭର ଓ ଅଖିଳ ବାବୁ କଟକ ଯିବା ପାଇଁ ବାହାରିଲୁ । ତଳେ ଅଫିସ ଘରେ ବହି ବିଷୟରେ କ'ଣ ଲେଖି ବୁଲୁକୁ ଚିଠିଟା ଦେଇ କହିଲେ ଆଜି ନେଇ ମହେନ୍ଦ୍ର ବାବୁଙ୍କୁ ଦେବୁ । ସେଇ ତାଙ୍କର ଶେଷ ଚିଠି । ହୁଏତ ମହେନ୍ଦ୍ର ବାବୁଙ୍କ ପାଖରେ ଥାଇ ପାରେ । ନିଜେ କାର ଚଳାଇ ନେଲେ । ବାଟରେ ଅନନ୍ତ ମହାପାତ୍ରଙ୍କୁ ଦେଖି ହାତ ହଲାଇ wish କଲେ । ସବୁ କିଛି ଠିକ୍ ଥିଲା । ହଠାତ୍ ଅଣତିରିଶ ତାରିଖ ଦିନ ବାରଟା ସମୟରେ ଅପ୍ରତ୍ୟାଶିତ ଭାବେ ଅପରେସନ୍ ଟେବୁଲରେ ତାଙ୍କର ମହାପ୍ରୟାଣ ହେଲା । ସଂଧ୍ୟାରେ ଆଞ୍ଚଳିକ ସମ୍ବାଦ ଏହି ଦାରୁଣ ସମ୍ବାଦ ବେତାର ମାଧ୍ୟମରେ ପ୍ରଚାର କଲେ । ପ୍ରିୟଜନ ବନ୍ଧୁ ହିତୈଷୀ ସମ୍ବାଦ ଶୁଣି ମର୍ମାହତ ହେଲେ । ବହିର ପ୍ରାୟ ସବୁ କାମ ସରିଥିଲା କିନ୍ତୁ ମନସ୍ତାତ୍ୱିକ ପ୍ରେୟସୀ ସୁଜାତା ପାଖକୁ ଲେଖା ପୁସ୍ତକ 'ଅନାଗତ ଫାଲଗୁନ' ନିଜ ଆଖିରେ ଦେଖି ଆନନ୍ଦ ପାଇ ପାରିଲେ ନାହିଁ । ମହେନ୍ଦ୍ର ବାବୁ ଖୁବ୍ ଦୁଃଖିତ ହେଲେ କିନ୍ତୁ ବିଧିର ବିଧାନ କିଏ ଅନ୍ୟଥା କରି ପାରିବ ?

ଠିକ୍ ମାସକ ପରେ ଡିସେମ୍ବର ଅଣତିରିଶ ତାରିଖ ସଂଧ୍ୟାରେ ବାଲିଘର ବୈଠକ ଖାନାରେ ମନସ୍ତାତ୍ୱିକଙ୍କର ଅସମାପ୍ତ ତୈଳଚିତ୍ର ପାଖରେ ସମସ୍ତେ ସମବେତ ହେଲେ । ଅଭିଅଳି ଝିଅ ମାମା ତୈଳଚିତ୍ରଟିକୁ ଫୁଲ ଚନ୍ଦନ ଧୂପ ଦୀପ ପ୍ରଜ୍ୱଳିତ କରି ସଜାଇ ଥିଲା । ତିନି ଭାଇ ଭଉଣୀ ଲୁହଭିଜା ଆଖିରେ ବାପାଙ୍କୁ ଶ୍ରଦ୍ଧା ନିବେଦନ ଜଣାଇ ଥିଲେ । ନିକଟରେ ବନ୍ଧୁ ମହେନ୍ଦ୍ର ବାବୁ, ସ୍ନେହାସ୍ପଦ ଜଗଦୀଶ ପାଣି ଓ ପ୍ରିୟ ଅସୀମ ବାବୁ ଓ ଅଖିଳ ପରିବାରର ସମସ୍ତଙ୍କର ସମାବେଶରେ 'ଅନାଗତ ଫାଲଗୁନ' ଉନ୍ମୋଚିତ ହେଲା । ପ୍ରତ୍ୟେକଙ୍କର ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ଅର୍ଘ୍ୟରୂପେ ନିବେଦିତ ହେଲା ବିଗତ ପ୍ରିୟ ଆତ୍ମା ଉଦ୍ଦେଶ୍ୟରେ ।

ଅଠରବର୍ଷ ବିତିଗଲାଣି । ସମୟ ସ୍ରୋତରେ ସବୁ କ'ଣ ଧୋଇ ହୋଇ ଭିଜିଯାଇ ପାରେ ? ସ୍ମୃତି ଚିରନ୍ତନ ଓ ଶାଶ୍ୱତ । ମନେ ହେଲା ମହେନ୍ଦ୍ର ବାବୁ ଆସି ଅଖିଳ ବାବୁଙ୍କୁ କହୁଛନ୍ତି ଏଥର କିନ୍ତୁ ଠିକ୍ ସମୟରେ ବହିଟା ପ୍ରକାଶିତ ହେବ । ମହେନ୍ଦ୍ର ବାବୁ ଦ୍ୱିତୀୟ ସଂସ୍କରଣ ପ୍ରକାଶ କରୁଛନ୍ତି, ତାଙ୍କରି କଥା ରଖି ଦିପଦ ଲେଖିଲି । ମୋର ଆଶା ଓ ବିଶ୍ୱାସ 'ଅନାଗତ ଫାଇଗୁନ' ସୁଧି ପାଠକ ପାଠିକା ମାନଙ୍କୁ ଆନନ୍ଦ ଦେଇ ପାରିଲେ ମନସ୍ତାତ୍ୱିକର ଚିଠି ସାର୍ଥକତା ଲାଭ କରିବ ।

ବାଲିଘର, ଭୁବନେଶ୍ୱର - ୨
ମାର୍ଚ୍ଚ ୨, ୨୦୦୦

ଶ୍ରୀମତୀ ଜ୍ଞାନଦା ପଟ୍ଟନାୟକ

# ପ୍ରଥମା

ସ୍ନେହର ସୁଜାତା,

ଆଜିର ଏ ବର୍ଷଣକ୍ଲାନ୍ତ ସାରା ଅପରାହ୍ନଟାକୁ ମୁଁ କେବଳ ଝରକା ବାଟେ ଅଳସରେ ଚାହିଁ ଚାହିଁ ଉପଭୋଗ କରୁଛି - ଦୀର୍ଘ ଜୀବନ କାମନା କରୁଛି ଏଇ ଆଗନ୍ତୁକ ନୂଆ-ଆଷାଢ଼ର । ଅଳ୍ପ ଅଳ୍ପ ପାଣି ଛିଟ୍‌କା ଆସି ମୋ ମୁହଁରେ ପଡୁଛି । ସୁନ୍ଦର — ସୁନ୍ଦର ଏଇ ନବାଗତ ଆଷାଢ଼ । ବାୟୁମଣ୍ଡଳରେ ମିଶି ମିଶି ରହିଚି ଯେମିତି ମାଟିର ସବୁଜ ଗନ୍ଧ ଭିଜା ପୀଡ଼ିତ ଧରିତ୍ରୀର ନିଶ୍ୱାସ । ଗେରୁଆ ମାଟି ଉପରେ କ୍ରମବିସ୍ତୀର୍ଣ୍ଣ ନୀଳଘାସର ମାନଚିତ୍ର ଦେଖି ଭିତରେ ଚେଇଁ ଉଠୁଚି ଗତ ସାଲର ଦରଭୁଲା ଆଷାଢ଼ । ଫୁଙ୍ଗୁଳା ଦେହରେ ଚମତ୍କାର ଲାଗୁଛି ଏ ଆଷାଢ଼ର ସ୍ପର୍ଶ ଅନେକଟା ରୋମାଣ୍ଟିକ୍ ।

ତୁମ ଚିଠିର ପ୍ରତୀକ୍ଷା କରୁଛି ଅନେକଦିନ ଧରି — ଅସ୍ଥିର କଲାଣି ମତେ ଏଇ ଶେଷହୀନ ପ୍ରତୀକ୍ଷା । ଆଶାକରେ, ପରୀକ୍ଷା ହେତୁ ଚିଠି ଦେଇପାରୁ ନାହିଁ ବୋଲି ଗୋଟାଏ ଗତାନୁଗତିକ ସ୍ଲୋଗାନ ତୁମେ ଦବ ନାହିଁ । କଣ ବା ଏତେ ପଢିବ ବର୍ଷ ବର୍ଷ ଧରି ? ଶେଷ ନାହିଁ ପଢ଼ିବାର ଆଉ ସେଥିପାଇଁ ମଧ ପଢ଼ିରହିଛି ବିସ୍ତୃତ ଜୀବନ । ବିଶ୍ୱବିଦ୍ୟାଳୟର ଚରଣ ତଳେ ଆହୁତି ନ ଦେଲେ ଚଳିବ ଜୀବନର ଏଇ ଅଳ୍ପାୟୁ ଉଚ୍ଛଳ ବସନ୍ତ ।



ଠିକ ଏଇ ମୁହୂର୍ତ୍ତରେ କଣ କରୁଛ ତମେ ? ମୋରି ପରି ଖାଲି ଚାହିଁ ରହି ଯଦି ନିର୍ବୋଧ ମେଷଶିଶୁର ଆନନ୍ଦ ଉପଭୋଗ କରୁଥାଅ ଚାହାହେଲେ ମନ୍ଦ ନୁହେଁ । ନାଇଁ ଯଦି ରୋମାଣ୍ଟିସିଜିମ୍‌ର ସ୍କେଲ୍‌ରେ ଆଉ ପାଦେ ଆଗେଇ ଯାଇ ବର୍ଷାରେ ଭିଜି ଭିଜି ଆଷାଢ଼-ଅତ୍ୟାଚାରିତ ସହରର ହୃତ୍‌ପିଣ୍ଡ ଅନୁଭବ କରୁ କରୁ ହଠାତ୍ କେଉଁ ରେସ୍ତୁରାଁରେ ବସି ଚା' ପିଉଥାଅ, ତାହାହେଲେ ଚମତ୍କାର ।

ସତେ ସୁଜାତା, ଚମତ୍କାର ଲାଗେ ଘୁରି ବୁଲିବା ଏଇ ବର୍ଷାରେ ଭିଜି ଭିଜି — ଘରଫେରା ସ୍କୁଲ ଛାତ୍ର ପରି । ବର୍ଷାର ଘନଘଟା ଦେଖିଲେ ମନଟା ଯେମିତି ହିଂସ୍ର ହୋଇ ଉଠେ, ରୁଦ୍ର ତାଣ୍ଡବ କରି ଉଠେ ମନୁଷ୍ୟ ଭିତରର ପଶୁ । ଆଉ ମନୁଷ୍ୟ ଭିତରେ ଯଦି କିଛି ସନାତନ ଥାଏ, ତା'ତ ପଶୁ — ନିଛକ୍ ପାଶବିକତା !

ହଁ, ଚିର-ଅଭ୍ୟସ୍ତ ସହରର ଜୀବନ ଛାଡ଼ି ମନ୍ଦ ଲାଗୁ ନାହିଁ ଏ ଯାଗାଟା । ଏ ଯାଗାଟା ଏକରକମ ସହର ନୁହଁ — ନୁହଁ ଗାଁ । ତେଣୁ ଏଠି ଆଦିମ ଓ ଆଧୁନିକ ପାଖ ପାଖ ହୋଇ ଦୁଇଟା ସ୍ୱର୍ଶ ଏକାଠି ମିଳେ । ଆଧୁନିକତାର ରେଶମୀ ଖୋଳ ଭିତରେ ରହି ଯଦି କେହି ଚାହେଁ ପୁରାତନ ପ୍ରସ୍ତର ଯୁଗର କେଭ୍‌ମ୍ୟାନ୍‌ର ଉଦ୍ଭଟ ଆନନ୍ଦ ଉପଭୋଗ କରିବାକୁ, ତାହେଲେ ତାର ଏଠିକି ଆସିବା ଏକାନ୍ତ ପ୍ରୟୋଜନ । ନିଉୟର୍କ, ମସ୍କୋ ବା ଲଣ୍ଡନ ପରି ଆମ ଏଠିକା କ୍ଷୁଦ୍ର ପୋଷ୍ଟ ଅଫିସରେ ଚିଠି ପକାଇଲେ, ପୃଥିବୀର ସଭ୍ୟତମ ଭୂଖଣ୍ଡ ଭିତରକୁ ତାର ଅବାଧ ଗତି, ପାଖ ଷ୍ଟେସନରୁ ଟିକଟ କାଟିଲେ, ଭାରତର ନିକଟତମ ବିମାନଘାଟିରେ ପହଞ୍ଚି ଆନନ୍ଦରେ ପହଁରି ଯାଇହେବ ଦେଶ ଦେଶାନ୍ତର ।

ଅଥଚ ମୋରି ଘର ପଛପଟେ ପାହାଡ଼, ନଈ, ଆଉ ଜଙ୍ଗଲ — ଚାରିଆଡ଼େ ଅଷ୍ଟ୍ରେଲିଆର ମେଷଚାରଣ ଭୂମି ପରି ଘାସ-ନୀଳ ପ୍ରାନ୍ତର । ପାଖେ ପାଖେ ମେଟାଲ୍ ରୋଡ଼, ପୁଣି ଅଛି ଭିତରେ ସିଆର କାଟି କଅଁଳ ଚଲା-ରାସ୍ତା ।

ବର୍ଷା ପ୍ରାୟ କମି ଆସିଲାଣି, କୋଇଲା ଚୁଲୀର ବଂକିମ କୁଞ୍ଚ-କୁଞ୍ଚିଆ ଧୂମ୍ର କୁଣ୍ଡଳୀ ପରି ପୁଣି ତୁହାକୁ ତୁହା କଳା ବାଦଲ ଉଠିଆସି ଆଚ୍ଛନ୍ନ କରି ରଖିଚି ଆକାଶ । ଯେମିତି ଗଭୀର ହୋଇ ଆସୁଚି ମେଘ-କନ୍ୟାର ଆଲିଙ୍ଗନ ! ରତିବିଳାସ ପରେ କ୍ଲାନ୍ତ ଅବସନ୍ନ ଯେପରି ଏହି ସର୍ବଂସହା ବସୁନ୍ଧରା ! ଦୂର ଆକାଶରେ ଅସ୍ପଷ୍ଟ ଭାବରେ ଉଡ଼ିଯାଉଛନ୍ତି ଦୁଇଟି ନାଁ-ନଜଣା ପକ୍ଷୀ — ହୁଏତ ବଳାକା ଦମ୍ପତି ।

ଓଃ କି ଅଶାନ୍ତି ! କି ଅତୃପ୍ତି ! କି ନିଃସଙ୍ଗତା !

ମୁଁ ତୁମକୁ ଅନେକ ଥର ନିମନ୍ତ୍ରଣ କରିଛି, ଆଉ ଆଜି ବି ନିମନ୍ତ୍ରଣ କରୁଛି, ତୁମେ ଯଦି ଏଠିକି ଆସନ୍ତ, କି ସୁନ୍ଦର ଉପଭୋଗ କରି ହେଉଥାନ୍ତା ଏଇ ମେଘମଳିନ ସନ୍ଧ୍ୟା । ଆଷାଢ଼ର କୃଷ୍ଣଛାୟା ତଳେ ଚା'କପ ଉପରେ ମୁହଁ ଝୁଙ୍କାଇ ବସି ଯେମିତି ଆମର ଭଲପାଇବା ହୁଅନ୍ତା ସଂପୂର୍ଣ୍ଣ — ସଫଳ !

ନ ଆସି ତମେ ଭୁଲ କରୁଚ । ଠିକ୍ ଏଇ ମୁହୂର୍ତ୍ତରେ ଛାତିରେ ହାତୁଡ଼ି ଧରି କିଏ ଯେପରି ଆଘାତ କରୁଛି — କରାଘାତ କରୁଛି ଯେପରି ସେଇ ଚିର ରହସ୍ୟମୟୀ 'ଭଲ ପାଇବା' ।

ତମର ମନେ ଅଛି ନାଁ ସୁଜାତା, ମୁଁ ତୁମକୁ ଦିନେ କହିଥିଲି — ଉର୍ଣ୍ଣନାଭ ପରି ଅତି ସୂକ୍ଷ୍ମ ଆଉ ଭଙ୍ଗୁର ଏଇ ଭଲ ପାଇବା — ତାକୁ କେନ୍ଦ୍ର କରି ବିଶେଷ ଅନୁଶୀଳନ ନ କରିବାଟା ବିଜ୍ଞତା । ତାକୁ ଅନୁଶୀଳନ କରି କେହି କିଛି ପାଇ ନାହିଁ — ଯାଦୁକର ପାଟିରୁ ହରରଙ୍ଗୀ କାଗଜ ଟାଣିଲା ପରି ସମସ୍ତେ ଟାଣି ଟାଣି କ୍ଲାନ୍ତ ହୋଇଯାଇଛନ୍ତି । କିନ୍ତୁ ପାଇଛନ୍ତି କଅଣ ? ରୂପ କଥାର ଅସୁରୁଣୀ ବୁଢ଼ୀର ସୁତାବିଣ୍ଡା ପଛରେ ଦୌଡ଼ିଛନ୍ତି ଅସଂଖ୍ୟ ରାଜକୁମାର । ମୃତ ପ୍ରିୟାର ଶବକୁ କାନ୍ଧରେ ପକେଇ ଘୂରି ଘୂରି ପାଗଳ ହୋଇଯାଇଛନ୍ତି;

ନୀଳନୀରା ଯମୁନାର ଶଯ୍ୟା ଉପରେ ଗଢି ଉଠିଛି ଭଲ ପାଇବାର ଏକ ଅପୂର୍ବ ସମାଧି — ତାଜମହଲ — ଭଲ ପାଇବାର ଦ୍ୟୁତ କ୍ରୀଡାରେ କିଙ୍ଗ ଏଡ୍‌ୱାର୍ଡ଼ ହାରି ଯାଇଛନ୍ତି ବ୍ରିଟିଶ-ସାମ୍ରାଜ୍ୟ, କିନ୍ତୁ କେହି କ'ଣ ଜାଣିଚି ଭଲ ପାଇବାର ସଂଜ୍ଞା ?

ବିଚିତ୍ରେ ଏଇ ଭଲ ପାଇବା — ଟ୍ରପିକ୍‌ର ମୌସୁମୀ ବାୟୁ ଅପେକ୍ଷା ଆହୁରି ଖିଆଲି । ବୀଜଗଣିତ ବା ଲୀଳାବତୀ ସୂତ୍ରପରି କୌଣସି ଫର୍ମୁଲା ନାହିଁ ଭଲ ପାଇବାର — କୌଣସି ନିର୍ଦ୍ଦିଷ୍ଟ ଗତିପଥ ନାହିଁ — ମାପି ହବ ନାହିଁ, ଓଜନ କରି ହବ ନାହିଁ, ଯଥାର୍ଥରେ ଦର୍ଶନ ଶାସ୍ତ୍ର ସିଦ୍ଧ ଆବ୍‌ଷ୍ଟ୍ରାକ୍ଟ ।

କିନ୍ତୁ ତା'ବୋଲି ଭଲ ପାଇବାକୁ ପରଭର୍‌ସନ୍ କହିଲେ ଚଳେ ନାଁ । ତା' ଠିକ୍ ଧାନ ପରି ଗୋଟାଏ ପ୍ରଧାନ ଖାଦ୍ୟ, ଠିକ୍ ଧାନ ଗଛ ପରି ତା ବଢ଼େ, ଫଳେ, ମରିଯାଏ । ଗଜାମରୁଡ଼ି ବି ହୁଏ । ଅନେକ ହୁଏତ କ୍ଷୁର୍ଣ୍ଣ ହେବେ — ଭଲ ପାଇବାଟା କ'ଣ ମରେ ? ହଁ ମରେ । ଭଲପାଇବା ଯଦି ନିରାକାର ଅଦୃଶ୍ୟ ଭଗବାନ ପରି ସର୍ବବିଦ୍ୟମାନ — ତା' ଯଦି ପରପାରର କୋଟି କୋଟି ପ୍ରେତାତ୍ମାମାନଙ୍କ ପରି ଜଳ-ସ୍ଥଳ-ନଭ ଦଶ ଦିଗରେ ବିଚରଣ କରି ପ୍ରେମର ସହୀଦ୍‌ମାନଙ୍କର ଯଶଗାନ ପ୍ରଚାର କରୁଥାଏ, ତାହା ହେଲେ ଅବଶ୍ୟ ମୁଁ କହି ପାରୁ ନାହିଁ କିନ୍ତୁ ଯଦି ଭଲପାଇବା ହୁଏ ତୁମର ମୋର ଭଲ ପାଇବା — ହରିପଦ ମଞ୍ଜୁର ଭଲ ପାଇବା, ଶବରା ପୁନିର ଭଲ ପାଇବା, ପୁରୁଷ ସ୍ତ୍ରୀର ଭଲ ପାଇବା, ତାହାହେଲେ ତା' ନିଶ୍ଚୟ ମରେ ।

ଭଲ ପାଇବା ଯେ' ମରିଯିବ — ଉଚ୍ଛୃଙ୍ଖଳ ବନ୍ୟା ଆହୃତ ନଦୀର ସ୍ରୋତ ଯେ ଶୁଖିଯିବ, ଏ ସତ୍ୟଗୁଡ଼ାକୁ ଗ୍ରହଣ କରିନେଲେ କ୍ଷତି କଣ ? ତା' ସତ୍ତ୍ୱେ ବି ଚିରନ୍ତନ ପ୍ରେମ — ଅମର ପ୍ରେମର ଦର୍ଶନ ପ୍ରଚାର କରିବାକୁ ଅଭାବ ନାହିଁ ପୁସ୍ତକର । ସତେ, ଆଶ୍ଚର୍ଯ୍ୟ ଏଇ ଅମୃତର ସନ୍ଧାନ — ସ୍ୱର୍ଣ୍ଣ ମୃଗର ଅକ୍ଳାନ୍ତ ଅନୁସରଣ !

ଥରେ ଭଲପାଇବାର ସ୍ୱୀକାରପତ୍ର ପାଇଗଲେ ଅନେକ ଭାବନ୍ତି — 'ଯାହା ପାଇବାର ମିଳିଗଲା' । ଆଉ ସେଇଠି ସମସ୍ତ ଆକାଂକ୍ଷାର ସମାପ୍ତି । ଏଇ ଦଳରେ ଯିବେ ସିନେମା ଅଭିନେତ୍ରୀଙ୍କ ବିଜ୍ଞୋଷ ଦେଖି ବିନିଦ୍ର ଯାପନ କରୁଥିବା ଏକ୍‌ଚରଫା ପ୍ରେମିକମାନେ କିମ୍ବା Love at first sight ର ପ୍ରଯୋଜକ, ତାରା - ମୈତ୍ରୀ - ପଛୀ ।

ଛାଡ, ଭଲ ପାଇବାର ଅଛି ବହୁ ପନ୍ଥା, ଆଉ ଶାଖା ପ୍ରଶାଖା । କିନ୍ତୁ ଥରେ ଭଲ ପାଇବାର ପାସ୍‌ପୋର୍ଟ ପାଇ ପରେ ମୁହୂର୍ତ୍ତବାଦୀର ଅସ୍ଥାୟୀ ଛତ୍ରଛାୟା ତଳେ ଆଶ୍ରୟ ପ୍ରାର୍ଥୀ ହବା ନିଛକ ସିନିସିଜମ୍ । ଭଲ ପାଇବାକୁ ବଞ୍ଚେଇ ରଖିବାର କିନ୍ତୁ ନିର୍ଦ୍ଦିଷ୍ଟ ବିଜ୍ଞାନ ଅଛି । କ୍ଷୁଦ୍ର ତନ୍ୱୀ ନାଗବଲ୍ଲୀ ପରି ଭଲପାଇବାକୁ ବଞ୍ଚେଇ ରଖାଯାଏ, ଫଳବତୀ କରାଯାଏ, ଦୁଇ ପକ୍ଷର ନିରଳସ ସାଧନାରେ । ସେଥିପାଇଁ ପ୍ରୟୋଜନ, ଉଚିତ ଜଳବାୟୁ, ଜୀବନ ପ୍ରତି ନିର୍ଦ୍ଦିଷ୍ଟ ଦର୍ଶନ, ଉଭୟର ସମସ୍ତ ବୈପରୀତ୍ୟ ସତ୍ତ୍ୱେ ଗୋଟାଏ ମିଳିତ ଐକ୍ୟ ।

ତମେ ଯାହା ମନେ କର ନା କାହିଁକି — ପ୍ରେମ ସମ୍ପର୍କରେ ପୋଥିରୁ ଯାହା ଉଦ୍ଧୃତାଂଶ

ଦେଇ ଯୁକ୍ତି ବାଢ଼ନା କାହିଁକି, ମୋର ଭଲ ପାଇବା ସମ୍ପର୍କରେ ସ୍ୱଚ୍ଛ ଏଇ ଧାରଣା । ମୁଁ ଭଲପାଏ ଏଇ ମରଣଶୀଳ ଭଲ ପାଇବାକୁ । ଠିକ୍ ଯେମିତି ଭଲପାଏ ମୋର ମରଣଶୀଳ ବନ୍ଧୁବାନ୍ଧବଙ୍କୁ, ମୋର ଭଙ୍ଗୁର ଅଥଚ ସୁନ୍ଦର ଚା' ସେଟକୁ ।

ଥାଉ, ଇଉକ୍ଲିଡ଼ଙ୍କୁ ଆଣି ଭଲପାଇବା ଉପରେ ପ୍ରମାଣ ପୁସ୍ତକ ନ ଲେଖିଲେ ଚଳିବ ।

ବର୍ଷା ଛାଡ଼ି ଆସିଲାଣି । ଏଇ ବର୍ତ୍ତମାନ ସନ୍ଧ୍ୟା ହୋଇ ଆସୁଚି ଆସ୍ତେ ଆସ୍ତେ ଯେମିତି ଆସେ ପାଦ ଚିପିଚିପି ଉପନ୍ୟାସର ଅଭିସାରିକା । ନବାଗତ ଆଷାଢ଼ର ଏଛ ସନ୍ଧ୍ୟା — ଆର୍ଦ୍ର ସଂକୁଚିତ ପୃଥିବୀ ଉପରେ ଅବଗୁଣ୍ଠିତା ଅଭିସାରିକା ସନ୍ଧ୍ୟା । ସତେ ସୁଜାତା, ମନରେ ମାୟା ଆଣେ ଏଇ ଦୁର୍ଲ୍ଲଭ ମୁହୂର୍ତ୍ତ । ମୁଁ ଦେଖିଚି, ସହରର ଅପମାନିତା ଲାଞ୍ଛିତା ସନ୍ଧ୍ୟା, ବିଦ୍ୟୁତ୍ ଆଲୋକ ଆଉ ବେତାର ଚିତ୍କାର ଭିତରେ ହୃତଯୌବନା ସନ୍ଧ୍ୟା — ଟ୍ରାଫିକର କୋଳାହଳ ଭିତରେ ମୁମୂର୍ଷୁ ସନ୍ଧ୍ୟା !

ଆସ ସୁଜାତା ! ଦେଖିବ ଏଠି କେତେ ନୀରବ, କରୁଣ ଅଥଚ ସ୍ୱର୍ଣକାତର ଏଇ ଗୋଧୂଳି । ଆସ୍ତେ ଆସ୍ତେ କିପରି ଅବସ୍ଥିତି ଆମର ହଜିଯିବ, ଆମେ ଦୁଇଜଣ କିପରି ଅସ୍ୱଚ୍ଛ ହୋଇଯିବା ଦୁଇଟି ସିଲହଟ ଛବି ପରି ସନ୍ଧ୍ୟାର ପ୍ରଚ୍ଛଦପଟରେ ।

ମୋର ଚା'ପାନ ଇତିମଧ୍ୟରେ ସମାପ୍ତ । ମୁଁ ବର୍ତ୍ତମାନ ସାଙ୍ଗରେ ମୋର କୁକୁରକୁ ନେଇ ମେଘଯୁକ୍ତ ଆକାଶ ତଳେ ପାଣି ଚପର ଚପର କରି ପଦାକୁ ବାହାରିବି — କିଛି ସମୟ ପାଇ ନିରୁଦ୍ଦିଷ୍ଟ ହୋଇ ଯିବାକୁ ।

ତମର ନିମନ୍ତ୍ରଣ ତ ପ୍ରତିଦିନ ପାଇଚି । ତମରି ଅନୁରୋଧରେ ତ ପ୍ରାୟ ଅଧାଅଧି ଛୁଟି କଟେଇଲି ତମ ପାଖରେ । କିନ୍ତୁ ଆଜି କାହିଁକି ଏଇ ସହର ନୁହଁ — ନୁହଁ ଗାଁର ଆକର୍ଷଣ — ମାଟି ଓ ଗଛର ନିଶ୍ୱାସ ତମ ନିମନ୍ତ୍ରଣକୁ ଉପେକ୍ଷା କରିବାକୁ ମତେ ବାଧ୍ୟ କରୁଛି । କଣ କରିବା ସେଠି ଫର୍ମାବନ୍ଧା ସହର ଭିତରେ ? କୋଳାହଳ ଆଉ ଚିତ୍କାର ଭିତରେ ଯେପରି ଶ୍ୱାସରୁଦ୍ଧ ହୋଇ ଆସେ ।

ଆଜି ଯେମିତି ଇଚ୍ଛା ହୁଏ, ଗାଁର ଏଇ ନୀରବ ଶ୍ୟାମଳ ଜଳବାୟୁ ଭିତରେ ନିଜକୁ ହଜେଇ ଦବାକୁ, କିନ୍ତୁ ତୁମ ସହରରେ ହଜି ଯିବାର ଜୁ କାହିଁ ? ସବୁବେଳେ ନିତ୍ୟପ୍ରବୃତ୍ତ ବର୍ତ୍ତମାନ ।

ମୋର ଏଠି ପ୍ରଚୁର ଅବସର । ଏତେ ବେଶୀ ଅବସର କେହି ନ ପାଉ । ଏଇ କିଛି ଦିନ ଧରି ଗୋଟାଏ ବହି ପଢ଼ିବାରେ ବ୍ୟସ୍ତ ଅଛି । ପଢ଼ି ସାରିଲେ ପଠାଇବି ।

ମୁଁ ଏକରକମ ଅଛି । ତମର ଚିଠି ପାଇଁ ମୁଁ ଉତ୍କଣ୍ଠାର ସହିତ ଅପେକ୍ଷା କରୁଛି ।

ତୁମର

ମୁଁ

# ଦ୍ୱିତୀୟ

ସୁଜାତା ପ୍ରାଣାଧିକାଷୁ,

ଏତେ ବିଚଳିତ ହୋଇ ପଡ଼ିଛ କାହିଁକି ? ତୁମ ଚିଠି ପାଇ ମଧ ମୁଁ ବିଚଳିତ ହୋଇନାହିଁ ଏତେ ଟିକେ । ତୁମକୁ କଣ ମୁଁ ବାରମ୍ବାର କହି ନାହିଁ ସୁଜାତା, ଗୋଟାଏ ସମୟ ଆସୁଚି, ଯାହାର ତିକ୍ତତା ଆମ୍ଭମାନଙ୍କୁ ନିର୍ବିକାରରେ ଗ୍ରାସ କରିନେବାକୁ ହେବ ?



ତମେ କାହିଁକି ମନେ କରୁଛ ସେମାନେ ତମକୁ ଶିକାର କରିବା ପାଇଁ ଛୁଟିଛନ୍ତି, ଆଉ ତମେ ନଷ୍ଟନୀଡ଼ ଭୀତା କପୋତୀ ପରି ଆଶ୍ରୟ ଖୋଜି ବୁଲୁଛ ?

'ସଂଘ' ଭିତରେ ବା 'ଦଳ' ଭିତରେ ରହିଲେ କିଛି ମୂଲ୍ୟ ଦବାକୁ ହୁଏ — ଏବଂ ସେ ମୂଲ୍ୟ ଦିଆଯାଏ ଅନେକଟା ନିଜର ବ୍ୟକ୍ତିତ୍ୱ ବା ସ୍ୱାତନ୍ତ୍ର୍ୟକୁ ଅନାବିଳ ହୃଦୟରେ ହତ୍ୟା କରି । ବ୍ୟକ୍ତି ସହିତ ବ୍ୟକ୍ତିର ସାମଞ୍ଜସ୍ୟ କେତେ ! ବିଭେଦ ମଧ କେତେ ପ୍ରଚୁର ! ପ୍ରତ୍ୟେକର ବ୍ୟକ୍ତିଗତ ପ୍ରତିଭା, ରୁଚି, ହିଂସା, ଈର୍ଷା ସମସ୍ତର ଲଘିଷ୍ଠ ସାଧାରଣ ଗୁଣିତକ ନେଇ ସାଧାରଣ ପ୍ରତିଭା ଓ ରୁଚିର ମାନଦଣ୍ଡ ତିଆରି କରାଯାଏ ଆଉ ସେଇ ମାନଦଣ୍ଡର ନାଗପାଶକୁ ଆସ୍ତେ ଗୁଡ଼ାଇ ଆଣିବାକୁ ହୁଏ ବ୍ୟକ୍ତିର ଚାରି ପଟେ । ତାକୁ କୁହାଯାଏ ଶୃଙ୍ଖଳା । ତା' ଛଡ଼ା 'ବେଦ' କୁହ, ପ୍ରିନ୍‌ସପଲ କୁହ, ଡକ୍‌ଟ୍ରିନ୍ କୁହ, ତା'ଚ ଜଳୁଛି ତମ ଆଗେ ଆଗେ ପଥହରା ନାବିକର ଆଲୋକ-ସ୍ତମ୍ଭ ପରି । ତମେ ଭାବି ପାରିବନାହିଁ, ଚିନ୍ତା କରି ପାରିବ ନାହିଁ । ଏଇ ଯେ ଆଲୋକ ଦିଶୁଛି, ସେଇଠାକୁ ଯିବାକୁ ହେବ ଏବଂ ଯିବାକୁ ହେବ ଏଇ ଶୃଙ୍ଖଳାର ନାଗପାଶର ଫର୍ମୁଲା ଭିତରକୁ ମାର୍ଚ୍ଚ କରି !

ଏତ ଗଲା ଥିଓରି, ସବୁଠାରୁ ପ୍ରଣିଧାନର ବିଷୟ ତାର ବ୍ୟବହାର ପ୍ରଣାଳୀ — ଏକ୍ସିକ୍ୟୁସନ ।

ଯାହାସବୁ ଘଟିଗଲା ଏଇ କେତେ ଦିନ ଭିତରେ ତାହା ଅତି ସାଧାରଣ କଥା ମାମୁଲି । ତମେ କଣ ଭାବିଥିଲ, ସେମାନେ ଏତେ ସହଜରେ ଆମ ଦୁହିଁଙ୍କର ଭଲ ପାଇବାକୁ ସ୍ୱୀକୃତି ଦେଇଥାନ୍ତେ ? ଇତିହାସ ତ ତମ ବିରୁଦ୍ଧରେ ସାକ୍ଷ୍ୟ ଦିଏ । ତମେ ନିଜେ କ'ଣ ଈର୍ଷାଶୂନ୍ୟ ହୋଇ ମୁକ୍ତ ହୃଦୟରେ ଗ୍ରହଣ କରି ପାରିଥିଲ 'ଘନଶ୍ୟାମ-ତିଳୋତ୍ତମା', 'ପୂର୍ଣ୍ଣ-ସବିତା'ର ଭଲ ପାଇବା ? ତମେ କ'ଣ ମାର୍ଜନା କରି ପାରିଥିଲ ସୁବ୍ରତର ମୁହୂର୍ତ୍ତକର ଦୁର୍ବଳତା ?

ତମେ ତ କହି ନାହଁ ସୁବ୍ରତକୁ - 'ସୁବ୍ରତ ଭାଙ୍ଗି ପଡ଼ୁଛ କାହିଁକି ? ଏ ବିକୃତି ପାଇଁ ଦାୟୀ ତୁମର ଦୀର୍ଘ ଅବିବାହିତ ଜୀବନ । ମଣିଷ ଭୁଲ କରେ, ପୁଣି ସୁଧାରି ନିଏ, ଉଠ ସୁବ୍ରତ, ଆସ ଆଗେଇ ଯିବା... ଆସ ।'

ସୁବ୍ରତ ତ ସମଷ୍ଟି ଦୃଷ୍ଟିରୁ ବ୍ୟକ୍ତି ନୁହେଁ, ସୁବ୍ରତ ତ ମନୁଷ୍ୟ ନୁହେଁ, ସୁବ୍ରତ କେବଳ ସମଷ୍ଟି ସମଷ୍ଟିର ଭାଗଫଳ ନିର୍ଜୀବ, ପରିଚୟହୀନ ହରଣ ଫଳ ।

ତମର ତ ମନେ ଥିବ, ଯେତେବେଳେ ସମସ୍ତେ ମିଶି ସୁବ୍ରତର ଏତେ ଦିନର ଖ୍ୟାତିକୁ ଚଳିତଲାନ୍ତ କରି ହସିଥିଲ ଏକ ଅଟ୍ଟହାସ, ଆଉ ଉନ୍ମତ୍ତ ଚିତ୍କାର କରି ଉଠିଥିଲ 'ଦୁର୍ବଳ ତମେ... ଭୀରୁ ତମେ ସୁବ୍ରତ, କଳଙ୍କିତ ତୁମ ଚରିତ୍ର, ହୀନ, ନୀଚ ସ୍କାଉଣ୍ଡ୍ରେଲ' — ଯା' ଇଚ୍ଛା ତା ।

ଏ ତ ବ୍ୟକ୍ତିର ବ୍ୟକ୍ତି ପ୍ରତି ସମାଲୋଚନା ନୁହେଁ — ଏ ହେଉଛି, ସମଗ୍ର ଦୈତ୍ୟର ବ୍ୟକ୍ତିପ୍ରତି ମୃତ୍ୟୁ ଇସ୍ତାହାର ।

ଏ ସେଇ ଆଦିମ ମନୋବୃତ୍ତି । ଛୋଟ ପିଲା ବେଙ୍ଗକୁ ଟେକା ମାରେ, କାରଣ ବେଙ୍ଗ ପିଲାଠାରୁ ଦୁର୍ବଳ । ଏ ସେଇ ସ୍କୁଲ ପିଲାଙ୍କ ଦର୍ଶନ "I am stronger than you, and therefore you must fag for me."

ମୁଁ ସ୍ୱୀକାର କରୁଛି, ସୁବ୍ରତର ବ୍ୟକ୍ତିଠାରୁ ବହୁଗୁଣରେ ସବଳ ସମଷ୍ଟି, କିନ୍ତୁ ତା ବୋଲି କଣ ବରଣୀୟ ସମଷ୍ଟି-ଦାନବର ଏଇ ଯୁକ୍ତିହୀନ ଆକ୍ରମଣ ?

ସୁବ୍ରତକୁ ଗୋଟାଏ ସମାଜ-ବିରୋଧୀ ଡିବକ୍ ପ୍ରମାଣ କରିବା ପଛରେ ଥିଲା ଠିକ୍ ଏଇ ମନସ୍ତତ୍ତ୍ୱ । କିନ୍ତୁ ତମର ତ ସ୍ମରଣ ଥିବ ସୁଜାତା, ସେ ଦିନର ପ୍ରତେକଟି ମୁହଁ । କିନ୍ତୁ ସମସ୍ତେ କଣ ଛାତିରେ ହାତ ଦେଇ କହି ପାରିବେ, ସେମାନେ ସ୍ପଷ୍ଟବାଦୀ ? ସେମାନେ ପ୍ରକାଶ କରିଛନ୍ତି ସେମାନଙ୍କର ସମସ୍ତ ଦୁର୍ବଳତା ? ସେମାନଙ୍କର ଅତୀତ ? ହୁଏତ ସୁବ୍ରତ

ଠାରୁ ଆହୁରି ବେଶୀ ଦୁର୍ବଳ, ଚରିତ୍ରହୀନ, ଲମ୍ପଟ ସଇତାନମାନେ ସେଦିନ ସ୍ପଷ୍ଟବାଦୀ ଓ ଚରିତ୍ରବାନ୍‌ର ସାର୍ଟିଫିକେଟ ନେଇଗଲେ — କେବଳ ଗୋଟାଏ ଲୋକର କ୍ଷଣିକ ଦୁର୍ବଳତା ଉପରେ ଶସ୍ତା ସମାଲୋଚନା କରି — ବହିପଢ଼ା ଆଦର୍ଶକୁ ତୋତା ପରି ଘୋଷି ଘୋଷି । ଏଇ ରକ୍ତ-ମାଂସର ମନୁଷ୍ୟ ଦୁର୍ବଳ ହୋଇ ପଡ଼ିବା କେତେ ସହଜ, କେତେ ସାଧାରଣ, ଆଉ ଛଳନା କରି ଚରିତ୍ରବାନର ସାର୍ଟିଫିକେଟ୍ ହାସଲ କରିବା ମଧ କେତେ ଶସ୍ତା । କିଏ ଧରା ପଡ଼ିଯାଏ — କିଏ ଖସିଯାଇ ଅନ୍ୟକୁ ବ୍ୟଙ୍ଗ କରେ, 'ହାୟ, ତମେ ଧରା ପଡ଼ିଗଲ —' ଏଇ ତ !

ଏ ସମସ୍ତ ଭଣ୍ଡାମି ପଛରେ ଅତୀତରେ ତମର ସରବ ବା' ନୀରବ ସମର୍ଥନ ଆଜି ଅଷ୍ଟ୍ରେଲିଆ ଅଧିବାସୀର ବୁମରାଙ୍ଗ ପରି ତୁମ ପାଖକୁ ଫେରି ଆସୁଛି — ଗ୍ରହଣ କର । ତା' ନ ହେଲେ ମୁଁ ତୁମକୁ ଭୀରୁ କହିବି । ନିଜର ହାତଗଢ଼ା ଦୈତ୍ୟର କବନ୍ଧ ତମକୁ ଆକ୍ରମଣ କରୁଛି ଭସ୍ମାସୁର ପରି — ସାମ୍ନା କର ?

ମୋ'ର ବନ୍ଧୁ ବିପ୍ର ହିଁ ପ୍ରଥମେ ଆବିଷ୍କାର କରେ ତମର-ମୋର ଭଲ ପାଇବାର ଅଙ୍କୁର । ଆଉ ଠିକ୍ ତା'ରି ପରେ ପରେ ମତେ କାଠଗଡ଼ାରେ ଠିଆ କରେଇ ଦେଇ ମୋ' ଉପରେ ଆରମ୍ଭ କରିଦେଲା ଆକ୍ରମଣ । ସଂଘନାୟକ କୌଟିଲ୍ୟଙ୍କ ଶିଖା ଭାଷାରେ ସେ କ'ଣ କହିଗଲା ଜାଣ ତମେ ସୁଜାତା ?

'ତମେ ଅତି ଦୁର୍ବଳ ବିନୋଦ — ମୁଁ ତ ଠିକ୍ ତୁମରି ପରି ଅନେକ ଦିନ ମିଶିଛି ସୁଜାତା ସହିତ, କିନ୍ତୁ ଭଲ ତ ପାଇଛି ନାହିଁ ! ଇସ୍ପାତ ମୁଁ — ଆଉ ତା' ଛଡ଼ା ମଧ ବିନୋଦ, ତମର ମନେରଖିବା ଉଚିତ, ସରୋଜର ଉଚ୍ଛିଷ୍ଟ ସୁଜାତା । ମୁଁ ଘୃଣା କରେ ସୁଜାତାକୁ, ଯେମିତି ଘୃଣାକରେ ଗୋଟାଏ ବିଷାକ୍ତ ସାପକୁ, କାନ୍‌ସରକୁ । ଏଇ ମୋର ଶେଷ ଉପଦେଶ । ଉପଦେଶତ ନୁହେ, ବନ୍ଧୁ ହିସାବରେ ମୋର ଶେଷ କର୍ତ୍ତବ୍ୟ । ଆଉ ଶେଷପର୍ଯ୍ୟନ୍ତ ତମେ ଯଦି ବିବାହ କର ସୁଜାତାକୁ, ତାହାହେଲେ ତୁମ ବିବାହରେ ମୁଁ ଉପହାର ଦେବି ହଳେ ଛିଣ୍ଡା ଚପଲ୍ ।' ମୁଁ ବିପ୍ରକୁ କୋଟ୍ କରୁଛି ।

ମୁଁ ନିର୍ବାକ୍ ହୋଇ ଶୁଣି ଯାଉଥିଲି ।

ବିପ୍ରର ଭାଷା ଉପରେ ଦଖଲ ଅଛି । ଆଉ ଏଇ ଦାମୀ ଦାମୀ କଥାଗୁଡ଼ା ସେ ଯେପରି ଶାଣ ଦେଇ କହି ଯାଉଥିବ, ତା' ଅନୁମାନ କରି ପାରୁଥିବ । ମୁଁ ଖାଲି ଭାବୁଥିଲି, 'କିଏ ଏଇ ମହାପୁରୁଷ ସାଧୁ, ସଦ୍ୟ ହିମାଳୟରୁ ଅବତରଣ କରି ବନ୍ଧୁକୁ ବିପଦରେ ସାହାଯ୍ୟ କରିବାକୁ ବିନାମୂଲ୍ୟରେ ଉପଦେଶ ଗୁଡ଼ାକ ବିତରଣ କରି ଦେଇ ଯାଉଛନ୍ତି ... !'

ହସରେ କିନ୍ତୁ ଫାଟି ପଡୁଥିଲି ମନେ ମନେ ।

କିନ୍ତୁ ତମମାନଙ୍କର ବହୁ ପରିଚିତ ସେଇ ଚଞ୍ଚଳ ଚିର ଶସ୍ତା କମେଡ଼ିଆନ ବିପ୍ର ତ ପୁଣି ଏଇ ଦାମିକା ନୀତିବାକ୍ୟଗୁଡ଼ା କହିଯାଇ ପାରିଲା ।

ଏଇ ବିପ୍ର କିଛିଦିନ ତଳେ ଭଲ ପାଉଥିଲା ଅଧ୍ୟାପକ କୌଟିଲ୍ୟଙ୍କ ଭଉଣୀକୁ । ବିଚରା କ୍ଲାସ ଆଟେଣ୍ଡ କରିପାରେ ନାହିଁ । ରୋଗୀ ମା' ପାଇଁ ଔଷଧ ଗାଁକୁ ଯିବା ବାଟରେ ଫିଙ୍ଗି ଦେଇ ଏଇ ବିପ୍ର ବାରମ୍ବାର ଫେରିଆସେ ତା' ମେସ୍‌କୁ । କେଇଥର ମୋ ଆଗରେ ବିଳାପ କରେ, ଚିଠି ଲେଖେ — ସେ ଶ୍ୟାମଳୀକୁ ଛାଡ଼ି ରହି ପାରିବ ନାହିଁ କସ୍ମିନ୍‌କାଳେ । ତା' ପରେ ହଠାତ୍ ଦିନେ ସେମାନେ ଆବିଷ୍କାର କଲେ ସେମାନଙ୍କର ଆଉ ପରସ୍ପରକୁ ବିବାହ କରିବା ସମ୍ଭବ ନୁହେଁ । କ୍ଷୋଭ ନାହିଁ, ଠିକ୍ ତାର ପରେ ପରେ ବିପ୍ରବାବୁ ରୀତିମତ୍ ଅଗ୍ରଜ ସାଜି ବାହାରି ପଡ଼ିଲେ ଅନୁଜା ପାଇଁ ପାତ୍ର ଅନ୍ୱେଷଣରେ ।

ଇସ୍ ! କି କୁତ୍ସିତ ଏ ଅଭିନୟ ! ଏ ଗୋଷ୍ଠୀର ଲୋକଙ୍କ ଆଗରେ ଅନୁଜା ଓ ପ୍ରଣୟିନୀର ସୀମାରେଖା ଏତେ କ୍ଷୀଣ ଓ ଅସ୍ପଷ୍ଟ !

ଏ ଦେଶର ଜଳବାୟୁରେ ଏ ପ୍ରକାରର ଶସ୍ତା ଉପଦେଶ ଶୁଣାଅଛି ଅନେକ । ଏଠି ବୈଷ୍ଣବ ମାତ୍ରେଇ ଭଣ୍ଡ ।

ଆଉ ତର୍କ-ପଟୁ ପୂର୍ଣ୍ଣ, ସେ' ପୁଣି ଏକ ଅଦ୍ଭୁତ ଜୀବ । ସବୁବେଳେ ନିଜକୁ ଗୁଣବନ୍ତ ନୀତିବାନ୍ ମହାପୁରୁଷ ପ୍ରମାଣ କରିବାକୁ ବଡ଼ ବଡ଼ ନେତା ଦାର୍ଶନିକମାନଙ୍କର ଉଦ୍ଧୃତାଂଶ ଗାଉଥାଏ । ସେହି ପୂର୍ଣ୍ଣ ନା ଦିନେ ସବିତାପାଇଁ ପାଗଳ ହୋଇ ସେମାନଙ୍କର ପ୍ରଣୟ ପାଇଁ ବ୍ୟକ୍ତିଗତ ସମର୍ଥନ ଖୋଜି ବୁଲୁଥିଲା ଦୁଆର ଦୁଆର ହୋଇ । ସେ ମଧ୍ୟ ଥିଲା ଆମ ବିଚାରକ ମଣ୍ଡଳିର ଅନ୍ୟତମ ସଭ୍ୟ ।

ଆଉ ଲମ୍ବୋଦର ପାଇଁ ତ ମୋର ଏକରକମ ଦୟା ଆସେ । ସେ' ତ ବ୍ୟକ୍ତି ନୁହେଁ । ସେ ଗୋଟାଏ ଟାଇପ୍ । ତା'ର ନିଜସ୍ୱ କିଛି ନାହିଁ । ପୋଥିପଢ଼ା ଦର୍ଶନ ତାର ଏକମାତ୍ର ଦର୍ଶନ । ଯେ କୌଣସି ଅତିରଞ୍ଜିତ ଗାଲୁଗପ ତା ପାଇଁ ସତ୍ୟ । ଯେକୌଣସି ସମସ୍ୟା ବିଷୟରେ ତା'ର ଦୃଷ୍ଟିକୋଣ ବା ଚିନ୍ତାଧାରା ୧ନଂ, ୨ନଂ, ୩ନଂ, ନେତାଙ୍କଠାରୁ ଧାରକରା । ଆଉ ଠିକ୍ ଏହି ପ୍ରକାରର ବ୍ୟକ୍ତି ହିଁ ନେତାମାନଙ୍କର ସବୁଠାରୁ ବେଶୀ ପ୍ରୟୋଜନ । କୌଣସି ବିଷୟରେ ନିଜକୁ ନିର୍ଲିପ୍ତ ରଖି ନିଜର ମତବାଦକୁ ଚଳାଇ ନବାପାଇଁ ନେତାମାନଙ୍କ ହାତରେ ଲମ୍ବୋଦର ଗୋଷ୍ଠୀର ଲୋକେ ହୁଅନ୍ତି ହାତବାରିସୀ ।

ତେଣୁ ଲମ୍ବୋଦରଠାରୁ ଆଉ କଅଣ ଆଶା କରାଯାଆନ୍ତା ! ନିଜକୁ 'ନେତା' ପ୍ରମାଣ କରିବାକୁ ଯାଇ ସେମାନେ ନିର୍ବୋଧ ଅମରାବତୀରେ ପହଞ୍ଚନ୍ତି, ଆଉ ସେଥିରେ ଗୋଟାଏ ପ୍ରକାରର ମାନସିକ କ୍ଷତିପୂରଣ ପାଆନ୍ତି, ଯାହା ସେମାନଙ୍କର ପାଇବାର ଆଶା ନାହିଁ ଏଇ ବାସ୍ତବ ପୃଥିବୀରେ ।

ଏ ପ୍ରକାରର ଜୀବ କଳା, ରାଜନୀତି, ବ୍ୟବସାୟ, ସମସ୍ତ କ୍ଷେତ୍ରରେ ଦେଖା ଦିଅନ୍ତି । ସାହିତ୍ୟ କ୍ଷେତ୍ରରେ ଏମାନେ ସମ୍ପାଦକଙ୍କର ତୋଷାମୋଦକାରୀ ଓ ଅନ୍ଧ ସ୍ତାବକ

ହୋଇ ପତ୍ରପତ୍ରିକାରେ ନିଜର ଲେଖା ଛପାନ୍ତି । ବ୍ୟବସାୟରେ ଏମାନେ ଗୁମାସ୍ତା ହୋଇ ମାଲିକର ଢୋଲ କାଟିଯାନ୍ତି ଚୁଟିଆ ମୂଷା ପରି; ଆଉ ରାଜନୀତି କ୍ଷେତ୍ରରେ ଏମାନେ 'କୁଚି-ନେତା' । ନାଁ କରନ୍ତି କାମ, ନାଁ ଦେଇପାରନ୍ତି ନେତୃତ୍ୱ । କେବଳ ୧ ବା ୨ ବା ୩ ନମ୍ବର ନେତାଙ୍କର ଛତ୍ରଛାୟା ତଳେ ରହି କର୍ମୀମାନଙ୍କୁ ଶାସନ କରନ୍ତି ଓ ନିଜେ ଥାଆନ୍ତି ନିରାପଦ ।

ଏଇ ହାଁଜି କରା ସେବା-ଜୀବୀ, ଶୃଗାଳର ଦଳ ସମ୍ଭବ ସବୁକ୍ଷେତ୍ରରେ, ସବୁ ଯୁଗରେ — ସମ୍ଭବାମି ଯୁଗେ ଯୁଗେ ।

ଏମାନେ ମଧ୍ୟପଦଲୋପୀ କର୍ମଧାରୟ ପରି ଅଦୃଶ୍ୟ ହେଲେ ମଧ୍ୟ ମଧ୍ୟସ୍ଥର ମୁନାଫା ନବାରେ ସିଦ୍ଧହସ୍ତ । ଆଉ ଠିକ୍ ଏହିମାନେହିଁ ସବୁ କ୍ଷେତ୍ରରେ ଦୀର୍ଘଜୀବୀ; ଅମର ଏମାନେ । ଝଡ଼ରେ ହୁଏତ ଉଡ଼ିଯାଏ ୧ ନମ୍ବର ନେତାଙ୍କ ଛତା, ହୁଏତ ଝଡ଼ରେ ଚାପା ପଡ଼ି ମରିଯାନ୍ତି କ,ଖ,ଗ ପ୍ରଭୃତି ବେନାମୀ କର୍ମୀ; କିନ୍ତୁ ଏଇ ଚତୁର ଶୃଗାଳର ଦଳ ଠିକ୍ ସେତିକିବେଳେ ଖସି ଆସନ୍ତି ୨ନଂ ନେତାଙ୍କର ଛତାତଳକୁ ତାଙ୍କର ପ୍ରଶସ୍ତି ଗାଇ ଗାଇ । ଆଉ ମଣିଷ ଏମିତି ଗଢ଼ା, ନିଶ୍ଚୟ ଟିକିଏ ଉତ୍କର୍ଣ୍ଣ ହୋଇ ଶୁଣିବ ନିଜର ପ୍ରଶସ୍ତି — ଟିକିଏ ଟଳିଯିବ ନିଜର ସ୍ତାବକ ପ୍ରତି ।

ତେଣୁ ୧ନମ୍ବର ନେତାଙ୍କର ପୁଚ୍ଛବାହୀ ଶ୍ରୀମାନ୍ ଲମ୍ବୋଦରଙ୍କ ବିଷୟରେ କିମଧିକଂ ।

ଆଉ ତିଳୋତ୍ତମା ଓ ସତ୍ୟବତୀଙ୍କ କଥା ତ ତମେ ମୋ' ଅପେକ୍ଷା ବେଶୀ ଜାଣ । ସେମାନେ ତ ପ୍ରତି ପଦେ ପଦେ ଅସ୍ୱୀକାର କରିଗଲେ ସେମାନଙ୍କର ନିଜର ଅନୁଭୂତି — ସେମାନଙ୍କର ହଜିଲା ଅତୀତ । ଚଳନ୍ତି ବର୍ତ୍ତମାନର ବାହାବା ନବାପାଇଁ କ୍ଷତି କଣ, ଅସ୍ୱୀକାର କଲେ ନିଜର ଅଙ୍ଗନିଭା ଅତୀତକୁ । ଆମର ଅଙ୍ଗୀକାର ପତ୍ର ହେଲା ତର୍କଶାସ୍ତ୍ରର ଶୃଙ୍ଖଳା ଯୁକ୍ତି । ଆମର ପ୍ରେମ ହେଲା, ଉଚ୍ଛୃଙ୍ଖଳ ରୋମାଣ୍ଟିକ୍, ଆଉ ଆମେ ହେଲୁ ନୀତ-ହୀନ-ଯା' ଇଚ୍ଛା ତା' ... ।

କିନ୍ତୁ ସୁଜାତା, ନଂ୧ , ନଂ୨ , ନଂ୩ ନେତାଙ୍କର ଚେନବନ୍ଧା ପୋଷା କୁକୁର ପରି, ବା ତୋତା ପରି, ବା ହିଜ୍ ମାଷ୍ଟାର୍ସ୍ ଭଏସ୍ ରେକର୍ଡ ପରି ମୁନିବର ସ୍ୱର ପ୍ରଚାର କରି ବୁଲିବା ଅପେକ୍ଷା କେତେ ଉନ୍ନତ ଗୋଟାଏ ସ୍କାଉଣ୍ଡ୍ରେଲ୍ ବା' ଗୋଟାଏ ଲଘୁ ପ୍ରେମିକ ବା ଗୋଟାଏ ଭାଗାବଣ୍ଡର ସ୍ୱାଧୀନ ଚିନ୍ତାଧାରା ! ଏମାନେ ଅବଶ୍ୟ ଶୃଗାଳ ପରି ଚତୁର ନୁହନ୍ତି, ସେବାଜୀବୀ ନୁହନ୍ତି ଓ ଠିକ୍ ସେଇଥିପାଇଁ ନୁହଁନ୍ତି ଦୀର୍ଘଜୀବୀ । କିନ୍ତୁ ଏମାନେ ସ୍ପଷ୍ଟବାଦୀ । ଏମାନଙ୍କର ଯୁଗେ ଯୁଗେ ଜୟଗାନ କରାଯିବା ଉଚିତ୍ ବୋଧହୁଏ ।

ଏଇ ତ ଏଇମାନେ ଥିଲେ ସମାଲୋଚନାର ସୂତ୍ରଧର, ଆମର ବିଚାରକ-ବୃନ୍ଦ । ପ୍ରତ୍ୟେକଙ୍କୁ ତମେ ଜାଣ ଓ ମୁଁ ମଧ ଜାଣେ । ଆଉ ବାକୀ ଯେଉଁମାନେ ମୂକ ଦର୍ଶକ ଥିଲେ, ସେମାନଙ୍କୁ ବାଦ୍ ଦେଲେ ଚଳିବ । ସେମାନଙ୍କର ବିଜ୍ଞ ମୂକତା ଅଜ୍ଞତାର ପରିଚାୟକ ମାତ୍ର ।

ତମେ ମନସ୍ତତ୍ତ୍ୱ ଭଲ ପାଅ ବା ନ ପାଅ, ଆପାତତଃ ଏଠାରେ ଜଣେ ମନସ୍ତତ୍ତ୍ୱବିତ୍‌ଙ୍କର ତର୍ଜମା ନ ଦେଇ ମୁଁ ରହିପାରୁ ନାହିଁ ।

'ଯେ କୌଣସି ଦଳ ଅସମ୍ଭବ ସହଜ-ବିଶ୍ୱାସୀ ଓ ସମସ୍ତ ସମାଲୋଚନା ଶକ୍ତି ରହିତ । ସନ୍ଦେହ ବା' ଅନିଶ୍ଚିତତା ଦଳର ଅଜଣା । ଯେ କୌଣସି ସନ୍ଦେହ ପ୍ରକାଶ କରାଗଲେ, ତା ମୁହୂର୍ତ୍ତକରେ ଅବିଭାଜ୍ୟ ସତ୍ୟରେ ପରିଣତ ହୁଏ ଏବଂ ସାମାନ୍ୟ ବିରାଗ ପ୍ରଚଣ୍ଡ ଘୃଣାରେ ପରିଣତ ହୁଏ । କୌଣସି ଦଳକୁ ପ୍ରଭାବିତ କରିବାକୁ ହେଲେ କୌଣସି ତର୍କଶାସ୍ତ୍ରସିଦ୍ଧ ଯୁକ୍ତି ନିଷ୍ପ୍ରୟୋଜନ । କେବଳ ପ୍ରୟୋଜନ ନିଜର ଯୁକ୍ତିକୁ ଗାଢ଼ ରଙ୍ଗରେ ରଞ୍ଜିତ କରିବା — ଅତିରଞ୍ଜନ କରିବା ଓ ସେହି କଥାକୁ ପୁନଃ ଆବୃତ୍ତି କରିବା । ବିଭିନ୍ନ ବ୍ୟକ୍ତି ଯେତେବେଳେ କୌଣସି ଦଳରେ ଏକତ୍ରିତ ହୁଅନ୍ତି, ତାଙ୍କର ସମସ୍ତ ବ୍ୟକ୍ତିଗତ ଚରିତ୍ର ଲୋପ ପାଏ, ଏବଂ ବ୍ୟକ୍ତିର ଅର୍ଦ୍ଧଚେତନ ସ୍ତରର ହିଂସ୍ର ପଶୁ-ମନୋବୃତ୍ତି ଭୀଷଣ ଭାବରେ ଆତ୍ମପ୍ରକାଶ କରେ ।

'ଏବଂ ସର୍ବଶେଷରେ ଦଳ କଦାପି ସତ୍ୟର ଅନୁସନ୍ଧାନ କରେ ନାହିଁ । ମରୀଚିକାହିଁ ସେମାନଙ୍କର ଏକମାତ୍ର ପ୍ରୟୋଜନ ଏବଂ ମରୀଚିକା ବିନା ସେମାନଙ୍କର ଅବସ୍ଥିତି ସମ୍ଭବ ନୁହେଁ ।'

ତମର ଧୈର୍ଯ୍ୟ ଶେଷ ହେବଣି, କିନ୍ତୁ ଆମର ପଥ ଆହୁରି ଅନେକ ବାକୀ ।

ତୁମର ଏକାନ୍ତ
ମୁଁ

# ତୃତୀୟା

ଶ୍ରୀମତୀ ସୁଜାତା ଦେବୀ କରକମଳେଷୁ,

ଛୋଟ ପାହାଡ଼ ଉପରର ଏହି ନିର୍ଜନ ଡାକ ବଙ୍ଗଳାରେ ମୁଁ ଏଇ ଛୁଟିଟା କଟଉଛି । ଆଜି ପୂର୍ଣ୍ଣମୀ ଜ୍ୟୋତ୍ସ୍ନାର ତରଙ୍ଗ ବାଧା ମାନେନାଁ । ଚନ୍ଦ୍ରିକାର ଅବଗୁଣ୍ଠନ ତଳେ ଏଇ ମୁଣ୍ଡିଆ ତଳର ଛୋଟ ଛୋଟ ଚାଳିଘରର ଅସ୍ପଷ୍ଟ ଘଞ୍ଚ ଅବସ୍ଥିତି କିପରି କରୁଣ ମନେହୁଏ । ସେଠ୍ଦିଆ ଛୋଟ କିରାସିନୀ ଲ୍ୟାମ୍ପ ଆଲୁଅରେ ମୁଁ ତୁମ ପାଖକୁ ଚିଠି ଲେଖୁଛି ବସି ବସି । ଗୋଡ଼ ତଳେ ମୋର ଚିର ସଙ୍ଗୀ ଟିପୁ ଶୋଇ ରହିଛି ଉତ୍‌କର୍ଣ୍ଣ ହୋଇ । ଚାରିଆଡ଼କୁ ଲକ୍ଷ୍ୟ କଲେ କିଛି ଗୋଟାଏ ନିର୍ଦ୍ଦିଷ୍ଟ ଅନୁଭୂତି ମିଳେ ନାଁ । ତଥାପି କିପରି ଏକା ଏକା ମନେହୁଏ, ଇଚ୍ଛା ହୁଏ ଗୋଡ଼ ଚିପି ଚିପି ଘାସ ଉପରେ ନିଃଶବ୍ଦରେ ଚାଲିବାକୁ, ନିଜକୁ ନିଜେ କଥା କହିବାକୁ ମନେ ମନେ ।



ତମର ମନେ ଥିବ କେଜାଣି— ଆଜି ଆମର ପ୍ରଣୟର ତୃତୀୟ ବାର୍ଷିକୀ ।

ତିନିବର୍ଷ ତଳେ ଠିକ୍ ଆଜିର ଦିନରେ ଯେମିତି ଆମେ ପରସ୍ପରର ପରିଚୟ ପାଇଥିଲେ ପ୍ରଥମ କରି । ଦରଭୁଲା ଗୀତର ସୁର ପରି ଆଜି ମୋର ଧୀରେ ଧୀରେ ମନେ ପଡୁଚି, ସେଦିନର ସେଇ କରୁଣ ପରିବେଶରେ ପୌଷର ପ୍ରତ୍ୟୁଷ ପରି ଆମ ପ୍ରଣୟର ଭୀରୁ ଆତ୍ମପ୍ରକାଶ । ଦୈତ୍ୟପୁରୀର ମନ୍ତ୍ରଧୂଳିରେ ଯେପରି ସେଦିନ ଅଚେତନ ହୋଇ ପଡିଥିଲା ସମଗ୍ର ପୃଥିବୀ, ଆଉ କେବଳ ଜାଗ୍ରତ ଥିଲେ ତୁମେ ଆଉ ମୁଁ, ଯେପରି ଆଦାମ୍ ଆଉ ଇଭ୍ । ମନେ ପଡୁଛି ସେ'ଦିନର ପ୍ରତ୍ୟେକର ଅପର ପାଖରେ ନୀରବ ଆତ୍ମସମର୍ପଣ — ନୀରବ ଭାବର ବିନିମୟ । ଆଉ ସେଦିନ ନାଁ ମୁଁ ତୁମକୁ କହିଥିଲି, ଉର୍ଣ୍ଣନାଭ ପରି ଏହି ସୂକ୍ଷ୍ମ ଭଲ ପାଇବାକୁ ଅନୁଶୀଳନ ନ କରିବାହିଁ ଭଲ ସୁଜାତା । ସମ୍ପୂର୍ଣ୍ଣ ସର୍ତ୍ତ-ବିମୁକ୍ତ ତୁମର ମୋର ଏଇ ଭଲ ପାଇବା, ଯେଉଁ ଭଲ

ପାଇବା ପଛରେ ବିବାହ କରିବା ବା ଜଣେ ଅନ୍ୟର ଉପଗ୍ରହ ପରି ତା'ର ଆଦର୍ଶର ଅନୁଧାବନ କରିବା ପରି ସର୍ତ୍ତ ବା ଚୁକ୍ତି ଥାଏ, ତା'ତ ଭଲପାଇବା ନୁହଁ; ତା' ବ୍ୟବସାୟ । ମୋର ଅନ୍ତତଃ ଏଇଆ ଧାରଣା । ସତେ ସୁଜାତା, ତୁମକୁ କେମିତି ଲାଗୁଛି ଆମ ଦୁଇଜଣଙ୍କର ଏଇ ସର୍ତ୍ତହୀନ ପ୍ରୀତି — ଦୁଇଟି ଅଜଣା ଭିନ୍ନ-ଅରଣ୍ୟ-ପକ୍ଷୀଙ୍କର ଏଇ ଅକସ୍ମାତ୍ ସହାବସ୍ଥାନ ?

ଏଇ ତିନିବର୍ଷ ଯେମିତି ଗୋଟାଏ ମଧୁର ସ୍ୱପ୍ନ ପରି ମିଳେଇଗଲା କୁଆଡ଼େ । କେତେ ଅକାଳ-ବତାସୀ ବହିଗଲା ଆମ ଦୁହିଁଙ୍କ ଉପରେ । ହୁଏତ, ଏ ଝଡ଼ରେ ଆମେ ଦୁହେଁ ଭାଙ୍ଗି ପଡ଼ିଲେ ଟିକିଏ । କିନ୍ତୁ ଆମେମାନେ କାଗଜ ଟୁକୁରା ପରି ପବନରେ ଉଡ଼ିଗଲାବେଳେ ଯେଉଁମାନେ ଆମକୁ ଦେଖି ବ୍ୟଙ୍ଗ କରୁଥିଲେ, ସେମାନେ ? ସୁବ୍ରତକୁ ସେଦିନ ବିଚ୍ ରାସ୍ତା ଉପରେ ଅପଦସ୍ଥ କରି ଯେ'ନିଜକୁ ସଚରିତ୍ରା ସାବିତ୍ରୀ ପ୍ରମାଣ କରି ବାହାବା ପାଇଥିଲା, ତାଙ୍କ ଗୋଡ଼ ପୁଣି ଖସିଗଲାଣି ପ୍ରୀତିର ଶିଉଳିଲଗା ବାଟରେ । ଆମର ଚେତନାର ଅଭାବ ଥିଲା ବୋଲି କହି ଯେଉଁମାନେ ସ୍ପଷ୍ଟବାଦୀର ସାର୍ଟିଫିକେଟ୍ ନେଇଥିଲେ, ସେମାନଙ୍କର ସ୍ୱରୂପ ସ୍ପଷ୍ଟ ହୋଇଗଲାଣି । ସମୟର କଷଟି ପଥରରେ ଆପେ ଆପେ ପରଖି ହୋଇଗଲେଣି ସେମାନେ । ଅପେକ୍ଷା କର ସୁଜାତା, ସମୟ ସେମାନଙ୍କୁ ଆହୁରି ମାପିବ, ଆହୁରି ଓଜନ କରିବ । ସେମାନଙ୍କ ଉପରେ ସମୟର ଅନ୍ତିମ ଘୋଷଣାପତ୍ର ପଢ଼ିବାକୁ ଆନନ୍ଦ ଲାଗିବ କିନ୍ତୁ !

ମୁ କିନ୍ତୁ ଚାଲିଛି ଠିକ୍ ପୂର୍ବ ପରି । ଉପଦେଶ ଦେଇ ନାହିଁ କାହାକୁ ବା ଗ୍ରହଣ ମଧ କରି ନାହିଁ କାହାରି ଶସ୍ତା ଉପଦେଶ, ଆଜି ପର୍ଯ୍ୟନ୍ତ ମୋ ଜୀବନଟା କେବଳ ଚାଲିଛି ଟ୍ରାଏଲ୍ ଆଣ୍ଡ୍ ଏରର୍ ପ୍ରସେସ୍‌ରେ । ଠିକ ଶିଖିଛି, ବୁଲା କୁକୁର ବା ଟ୍ୟାକ୍‌ସି ପରି ବୁଲି ବୁଲି ଜୀବନର ଅଭିଜ୍ଞତାକୁ ସଂପୂର୍ଣ୍ଣ କରିବାକୁ ଚେଷ୍ଟା କରିଛି । ବୁଲା କୁକୁର ମନେ ହୁଏ ଏକ ଇତର ଜୀବ, ସାହିତ୍ୟର ଏକ ବେମାନନ୍ ଉପମା । କିନ୍ତୁ ଯେ' ଥରେ ବୁଲା କୁକୁର ପରି ନିଃସ୍ୱ, ରିକ୍ତ, ଓ ନଗ୍ନ ରୂପରେ ପେଟ ପାଇଁ ଖାଦ୍ୟ ଓ ମଦ ପାଇଁ ଅନୁଭୂତି ଯୋଗାଡ଼ କରିବାକୁ ବାହାରିଛି, ସହରର ରାସ୍ତାରେ ରାସ୍ତାରେ ... ପୁଣି ସେଇ କଥା ମନେ ପଡୁଛି- ୧, ୨ ବା ୩ ନଂ ନେତାଙ୍କର ଚେନ୍‌ବନ୍ଧା କୁକୁରର ଅଭିଜ୍ଞତା ଅପେକ୍ଷା ଗୋଟାଏ ବୁଲା କୁକୁରର ଅଭିଜ୍ଞତା କେତେ ସମ୍ମାନାସ୍ପଦ !

ଆଉ ଜୀବନଟାହିଁ ତ ଅନୁଭବ କରିବାର, ଗଭୀର ଭାବରେ ଅନୁଭବ କରିବାର କଥା । ଜୀବନର ସଂଜ୍ଞା ତ ବହୁ ଅନୁଭୂତିର ଏକତ୍ରୀକରଣ । ହଠାତ କେତେବେଳେ ଗୌରବର ଶୀର୍ଷ ସ୍ଥାନରେ ପହଞ୍ଚି ପୁଣି ତଳକୁ ଖସି ଆସି ଗୋଟାଏ ଅଚଳନ୍ତି ଟଙ୍କା ପରି ଘୂରି ବୁଲିବା — ଘୂରୁ ଘୂରୁ କେବେ କେବେ କକ୍ଷଚ୍ୟୁତ ହେବା... ଏୟାତ ଜୀବନ ! ଜୀବନ ଯେପରି ବିଛି ହୋଇ ପଡ଼ିଚି ଏଇ ବିଶ୍ୱର ରନ୍ଧ୍ରେ ରନ୍ଧ୍ରେ ହାତଠାରି ଡ଼ାକୁଚି ମୁହୁର୍ମୁହୁ । ମନୁଷ୍ୟ ଭିତରର ଚିରନ୍ତନ ଯାଯାବର ଶିଶୁ ଯେପରି ବାରମ୍ବାର ଚେଇଁ ଉଠେ, ଆନନ୍ଦରେ କୁଦିଉଠେ ଶିଶୁ କୃଷ୍ଣସାର ପରି । ପେକିଂର କେଉଁ ଅନ୍ଧାରୁଆ ଗଳି ଭିତରେ ସୁନ୍ଦରୀ ଚାଇନା ରମଣୀ କୋଳରେ

ମଥା ରଖି ଶୋଇବାକୁ ଇଚ୍ଛା ହୁଏ । ଇଚ୍ଛାହୁଏ ପ୍ୟାରିସର କେଉଁ ନାଁ ନଜଣା କାଫେରେ ମନ୍ତ୍ରିମଣ୍ଡଳ ଉପରେ ଶସ୍ତା ସମାଲୋଚନା କରି କଟେଇ ଦେବାକୁ ରାତି ପରେ ରାତି । ନିୟୁୟର୍କର ସ୍କାଇସ୍କ୍ରେପର ମାନଙ୍କର ଛାତ ତଳେ ପାଇପ୍ ଟାଣି ଚାଲି, ନହେଲେ ହଜାର ହଜାର ଫୁଟ ମାଟି ତଳେ କୋଇଲା-ଗୁମ୍ଫା ଭିତରେ ହାମୁଡ଼େଇ ହାମୁଡ଼େଇ କୋଇଲା ଖୋଜ, ଯା' ଭିତରେ ଜୀବନକୁ ଅବିଶ୍ରାନ୍ତ ଖୋଜିଲେ ମିଳେ, ଜୀବନ ପ୍ରତି ଉଚିତ୍ ଦୃଷ୍ଟିକୋଣ ଥିଲେ କେବଳ ଜୀବନ ଉପଭୋଗ କରିହୁଏ ।

ସାର୍ଥକ ଜୀବନର ସଂଜ୍ଞା ବିଷୟରେ ପରମ୍ପରା ଅବଶ୍ୟ ଭିନ୍ନ ମତ ଦିଏ । ସେ ମତ ଅନୁସାରେ ଗୌରବର ପାହାଚ ପରେ ପାହାଚ ଉଠି ଚାଲିଲେ ଜୀବନର ପୂର୍ଣ୍ଣତା ଆସେ । ଆଉ ସେଇ ଜୀବନ ପାଇଁ ଏ ଦେଶର ମେଧାବୀ ଛାତ୍ରଠାରୁ ଆରମ୍ଭ କରି ଅକାଳକୁଷ୍ମାଣ୍ଡ ପର୍ଯ୍ୟନ୍ତ ଦିବାରାତ୍ରି ପ୍ୟାରେଡ୍ କରୁଛନ୍ତି ଏହି ପାହାଚ ଉପରେ । ପାହାଚ ଉପରେ ପାହାଚ, ପୁଣି ପାହାଚ କିନ୍ତୁ କେଉଁଠି ଏହି ପାହାଚର ଶେଷ ? କିଏ ବଡ଼ ଆଉ କିଏ ଛୋଟ ? କଣ ଜୀବନର ମାନଦଣ୍ଡ ? କେହି ଭାବିବାକୁ ଚାହୁଁ ନାହିଁ, ଚରିତ୍ରକୁ କାମୁଡ଼ି ଧରି ପଡ଼ି ରହିଛି ମଧ୍ୟବିତ୍ତ ରକ୍ଷଣଶୀଳ ନିର୍ବୋଧର ଦଳ ଓ ତାକୁ କହୁଣିଆ ଦେଇ ପାହାଚ ପରେ ପାହାଚ ଉଠି ଚାଲିଛନ୍ତି ନୀତିହୀନ ଅର୍ଥ କୁବେର ମାନେ । ବିଶ୍ୱବିଦ୍ୟାଳୟ ଡ଼ିଗ୍ରୀ ହାସଲ କରି ପଙ୍ଗୁ ପରି ପଡ଼ି ରହିଛି ଦେଶର ମେଧାବୀ ଛାତ୍ର, ତାକୁ ବୁଟ୍‌ରେ ଆଡ଼େଇ ଦେଇ ପାହାଚ ଉଠି ଚାଲିଛନ୍ତି ଚତୁର ବ୍ୟବସାୟୀଙ୍କର ପଟୁଆର ।

ମତେ ଭୀଷଣ ହସ ମାଡୁଚି, ସୁଜାତା । କେବେ ଦେଖିଚ ତମେ ଏମିତି ପଟୁଆର ? କେବେ ଦେଖିଚ ଜୀବନକୁ ଉପଭୋଗ କରିବାକୁ ଚିନି କିରୋସିନ ପରମିଟ୍ ପାଇଁ କ୍ୟୁ ଦବାପରି, ଘଣ୍ଟା ଘଣ୍ଟା ଧରି ନିର୍ବିକାରଭେ ଠିଆ ହୋଇଥିବା ଯଶୋଲିପ୍ସୁ, ମୂର୍ଖ ଇଡ଼ିୟଟ୍‌ର ଦଳ ? ଯେଉଁମାନେ ପାହାଚର ଶୀର୍ଷସୀମାରେ, ସେମାନେ ବା ପାଇଛନ୍ତି କଣ ? ଆଉ ଯେଉଁମାନେ ପଛରେ, ସେମାନେ ବା' ହାମୁଡ଼ିହାମୁଡ଼ି ରକ୍ତସ୍ନାନ ହୋଇ ଧାଇଁଛନ୍ତି କାହିଁକି ? ହୁଏତ ସେଇ ସ୍ୱର୍ଣମଣି ପାଇବା ପୂର୍ବରୁ ଅର୍ଦ୍ଧପଥରେଇ ସେମାନଙ୍କର ମୃତ୍ୟୁ ହେବ ।

ଏ ପ୍ରତିଯୋଗୀତାରେ ଯୋଗ ଦେବାର ଇଚ୍ଛା ମୋର ନାହିଁ ମୋଟେ । ଶୀର୍ଷ ପାହାଚ ମୋର କାମ୍ୟ ନୁହେଁ ତିଳେ, ମୁଁ ବି ଚାଲିଛି ମନ୍ଥର ଗତିରେ । ସେଇ ପାହାଚରେ ଉପରକୁ ଯାଇଛି ଆଉ ତଳକୁ ଆସିଛି, ଖାଲି ହସୁଛି ଦେଖି ଦେଖି ଏଇ ମୂର୍ଖ ଯଶୋଲିପସୁମାନଙ୍କର ଶୋଭାଯାତ୍ରା ।

ତମେ ଦୌଡ଼ିବ ସୁଜାତା ? ଯୋଗଦେବ ଏହି ମାରାଥନ ଦୌଡାରେ ? ଦୌଡା ମନ୍ଦ ନୁହେଁ । ସେ ବି ଗୋଟାଏ ଅଭିଜ୍ଞତା । କିନ୍ତୁ ହୁଏତ ତିକ୍ତ । ତମେ ଯେତେବେଳେ ଘର୍ମାକ୍ତ ହୋଇ ଦୌଡ଼ିଥିବ, ପାହାଚ ପରେ ପାହାଚ ଡେଇଁ ଡେଇଁ, ସେତେବେଳେ ଦେଖିବ ନଦୀସ୍ରୋତରେ ଉଜାଣି ଭାସୁଥିବା କୁଟାଖିଏ ପରି ହାଲୁକା ଗତିରେ ମୁଁ ଫେରି ଆସୁଥିବି

ତଳକୁ ଗୀତ ଗାଇ ଗାଇ —

Alike for those who for today prepare
And those that after a tomorrow stare
A muezzin from the tower of darkness cries
Fools ! your reward is neither here nor there.

ସେଇଥି ପାଇଁ କହେ ସୁଜାତା, ଜୀବନକୁ ରାସ୍ତାରେ ଘାଟରେ ଫୋପାଡି ଦିଅ, ସେ ତୁମ ପାଖକୁ ଠିକ୍ ପୋଷା କୁକୁର ପରି ଫେରି ଆସିବ । ନୂତନ ଅଭିଜ୍ଞତା ନେଇ, ଅକୁଣ୍ଠିତ ଚିତ୍ତରେ ଜୀବନର ରାଜକୋଷରୁ ବ୍ୟୟ କରି ଚାଲ, ସେତିକି ସମୃଦ୍ଧଶାଳୀ ହେବ ତୁମର ଜୀବନ । ମୋଟ ଉପରେ ଜୀବନଟାକୁ ଅନୁଭବ କର, ଉପଭୋଗ କର, ପୂରାପୂରି ଫାର୍ଷ୍ଟହ୍ୟାଣ୍ଡ, ଅନ୍‌ଇନ୍‌ହିବିଟେଡ୍ ।

ସ୍ୱାଭାବିକ୍ ଚିନ୍ତାଧାରାରେ ଯେ, ତମେ ମୋ' ସହିତ ଏକମତ ହେବ, ମୁଁ ଆଶାକରେ ସେତିକି । ଯାହା ପୋଥିରେ ପଢାଯାଏ ବା, ଯାହା ଚିତ୍କାର କରି ପ୍ରଚାର କରାଯାଏ ଡାକବାଜି ଯନ୍ତ୍ର ସାହାଯ୍ୟରେ, ତା ସତ୍ୟ ନୁହେଁ । ସତ୍ୟ, ଯାହା ଅନୁଭବ କରାଯାଏ ହୃଦୟଦେଇ, ଯାହା କିଣିବାକୁ ହୁଏ, ନିଜ ଜୀବନକୁ ଅନୁଭୂତିର ଶୀଳାରେ କ୍ଷୟ କରି ତିଳେ ତିଳେ । ତେଣୁ ସତ୍ୟର ଅକ୍‌ସିଏସିଟିଲିନ୍ ଫ୍ଲେମ ଆଗରେ କେତେ ସମୟ ଠିଆ ହୋଇ ପାରିବ ଜମାଟ୍‌ବନ୍ଧା ଫାନାଟିସିଜିମ୍‌ର ଇସ୍ପାତ ? ମୁଁ ବୁଝୁଛି, ଏଇ ଅକ୍‌ସିଜେନ୍ ଶିଖା ଓ ଇସ୍ପାତର ସଂଘର୍ଷ ଅତି ଭୀଷଣ । ଅତି କଷ୍ଟହୁଏ ମନୁଷ୍ୟକୁ ଯେତେବେଳେ ତାର ସ୍ତୂପୀକୃତ ସମସ୍ତ ଧାରଣା (ଯାହାକୁ କୁହାଯାଏ ଆକଥିତ କନ୍‌ଭିକ୍‌ସନ୍) ବରଫ ସ୍ତୂପପରି ତରଳିବାକୁ ଆରମ୍ଭ କରେ । ଯେତେବେଳେ ତାର ଅତି ପ୍ରିୟ ସହଜ ଗତି କର୍ମସୂଚୀ ବାଧାପାଇ ଆଗେଇ ପାରେନାହିଁ । କିନ୍ତୁ ତା'ତ ହୁଏ । ଇତିହାସକୁ ସମୟ ବିଶେଷରେ ଓ କ୍ଷେତ୍ର ବିଶେଷରେ ଅପ୍ରମାଣ କରିବାତ ବର୍ତ୍ତମାନ, ପରସ୍ତ ପରସ୍ତ ହୋଇ ଅଭ୍ର ପରି ଏ ପୃଥିବୀ ଉପରେ ଜମାଟ ବାନ୍ଧି ଗଲାଣି କେତେକ ଦାର୍ଶନିକ ତଥ୍ୟ । କିନ୍ତୁ କେବେ ଶୁଣିଛ କୌଣସି ସ୍ତର ବିଶ୍ୱାସ କରେ ଅନ୍ୟ ଏକ ସ୍ତରର ସତ୍ୟତା ? ପୋହଳା ଏଣ୍ଡୁଅ ପରି ଥରକୁ ଥର ରଙ୍ଗ ବଦଳାଏ ଏଇ 'ସତ୍ୟ', ଯାହା ପଛରେ ମୂର୍ଖ ମନୁଷ୍ୟ ଗୋଡ଼ାଇଛି ଅଣନିଶ୍ୱାସୀ ହୋଇ ।

ରାତି ଅନେକ ହେଲାଣି, ଆଜି ଥାଉ । ତଳ ଠିକଣାରେ ଚିଠି ଦେବ ।

ତୁମର
ମୁଁ

# ଚତୁର୍ଥୀ

'କାଫେ ଡ଼ି ବଲଭେଡ଼ିର'
୨୪ ନଭେମ୍ବର

ପ୍ରିୟତମା ସୁଜାତା,

ବାହାରେ ପ୍ରଚଣ୍ଡ ଶୀତ । ଯେପରି ହିମାଳୟର ହିମଶଯ୍ୟା ବାଷ୍ପ ହୋଇଯାଇ ପବନର ପ୍ରତି ରେଣୁ ସିକ୍ତ କରି ପକାଇଛି । ଏସ୍କିମୋମାନଙ୍କ ପରି ପ୍ରାୟ ସମସ୍ତ ଦେହ ଲୋମ ଆବୃତ କରିଦେଇ ମୁଁ ରେସ୍ତୁରାଁର ଗୋଟିଏ କୋଣରେ ଅପେକ୍ଷା କରି ବସି ରହିଛି । କାହାକୁ ଅପେକ୍ଷା କରିଛି ମୁଁ ଜାଣେନାଁ, ଏ ଅପେକ୍ଷା ବୋଧହୁଏ କେବଳ ଅପେକ୍ଷା କରିବା ପାଇଁ ।



ଆଜି ସାରାଦିନ ବାହାରେ ଥିଲି । ରେସ୍ତୁରାଁର ଏଇ ସ୍ୱଚ୍ଛ ଆଲୋକିତ ନିଭୃତ କୋଣରେ ମୋତେ ହଠାତ୍ ଆବିଷ୍କାର କରି ଷ୍ଟିଓ୍ୱାର୍ଡ ଆଜିକାର ଚିଠି ଦେଇଗଲା । ପ୍ରତିଦିନର ଚିଠିକୁ ସାମ୍ନାରେ ମେଲାଇ ରଖି ମୁଁ ଭାବେ, ତମେ ଚିଠି ଦେଇଛ ବୋଲି । କିନ୍ତୁ ମୁଁ ଜାଣେ ତମେ ଚିଠି ଦେବ ନାହିଁ । ତୁମ ଚିଠିଗୁଡ଼ିକୁ ମୁଁ ଏତେ ଭଲ ପାଉଥିଲି ସତେ । ଏତେ ଉତ୍କଣ୍ଠାର ସହିତ ଅପେକ୍ଷା କରୁଥିଲି... କରୁଥିବି ମଧ... ।

ନାଁ, ତମେ ଚିଠି ଦେଇନାହଁ, ମୋର ଅନୁମାନ ସତ୍ୟ, କିନ୍ତୁ ଅପ୍ରତ୍ୟାଶିତ ଭାବରେ ଆଜି ଆଉ ଖଣ୍ଡେ ଚିଠି ପାଇଲି । ବହୁ ଦୂରାଗତ ।

ଚିଠିର ମର୍ମ ଲେଖିବା ପୂର୍ବରୁ ତମକୁ ପ୍ରଥମେ ଲିପିରଚୟିତ୍ରିଙ୍କ ସହିତ ପରିଚୟ କରାଇ ଦିଏ ।

ବାନ୍ଧବୀ କହିଲେ ଭୁଲ କରିବି, ସେ ମୋର ଜଣେ ଶୁଭାକାଂକ୍ଷିନୀ, ଯେହେତୁ ସେ ମୋର ଅଲକ୍ଷ୍ୟରେ, ମୋ ପରି ଜଣେ ଲୋକର ମଙ୍ଗଳ କାମନା ନିଃସ୍ୱାର୍ଥପର ଭାବରେ ପ୍ରାୟ କରି ଥାଆନ୍ତି । ସେଥିପାଇଁ ମୁଁ ତାଙ୍କୁ ଉଦାରହୃଦୟା ବୋଲି କୁହେ ।

ଉଦାର ହୃଦୟା ହେବା ଯେ ଚରମ ନିର୍ବୋଧତା ଏ ବିଷୟରେ ମୁଁ ତାଙ୍କୁ ସତର୍କ କରି ଦେଇଛି, କିନ୍ତୁ ଯେ ନିର୍ବୋଧ ସେ କଣ ନିଜର ନିର୍ବୋଧତା ବୁଝି ପାରେ ?

ତା' ନାଁ ମଞ୍ଜୁଳା ।

ସବୁଠାରୁ ଭଲ ଲାଗେ ମଞ୍ଜୁଳାର ବଡ଼ ବଡ଼ ଗୋଲ ଗୋଲ ଆଖି । ଠିକ ବଳଦର ଆଖିପରି ବିଶାଳ, ଶାନ୍ତ ଆଉ ନିରୀହ । ମଞ୍ଜୁଳାର ଦୁଇ ପ୍ରଶାନ୍ତ ଆଖିକୁ ଚାହିଁଲେ ମୋର ସବୁବେଳେ ମନେହୁଏ ଯେପରି ଏ ଆଖି କେବଳ ଅଭିମାନ କରିବା ଲାଗି ସ୍ୱତନ୍ତ୍ର ଭାବରେ ତିଆରି । ସତରେ ସୁଜାତା, ଚମତ୍କାର ଅଭିମାନ କରିହୁଏ ମଞ୍ଜୁଳାର ଆଖିରେ ।

ମଞ୍ଜୁଳା ଆସନ୍ନ ଯୌବନା, ସେ ଯାହା ଆଗରେ ବିରହିଣୀ, ଅଭିମାନିନୀର ଆଖି ନେଇ ଠିଆହେବ ସିଏ ମୁଁ ନୁହେଁ ।

ସେ'ଦିନ କିନ୍ତୁ ଯେପରି ଆନନ୍ଦରେ ଭାଙ୍ଗି ପଡୁଥାଏ ତା'ର ଦୁଇଆଖି । ଚକିତ ହରିଣୀର ଚଞ୍ଚଳ ଆଖି ନେଇ ସେ' ମୋ ପାଖରେ ଠିଆ ହୋଇ ଅତି ହାଲୁକା ଭାବରେ ପଚାରିଲା, ମୁଁ ଜୀବନରେ କଣ କରି ପାରିବି ? ବା' କଣ କଲେ ଭଲ ହୁଅନ୍ତା, ଏମିତି କିଛି କହି ପାରିବେ ?

ମୁଁ ଯେ କି ଉତ୍ତର ଦେବି ସେଥିପାଇଁ ପ୍ରସ୍ତୁତ ନ ଥିଲି । ଗୋଟାଏ ଖିଆଲରେ ମୁଁ ହଠାତ୍ କହି ପକାଇଲି, ମୁଁ ଖୁବ୍ ନିକଟରେ ଗୋଟାଏ ମସ୍ତ ଟୋପି ବ୍ୟବସାୟ ଖୋଲୁଛି । ତମେ ମୋର ସୋ' କେଶ୍‌ରେ 'ଡମି' ହୋଇ ଠିଆ ହେବ, ଆଉ ତମ ମୁଣ୍ଡ ଉପରେ ଗୋଟାକ ପରେ ଗୋଟାଏ ଫେଲଟ୍ କ୍ୟାପ ରଖି ମୁଁ ବିକ୍ରି କରିବି । ପ୍ରଚୁର ବିକ୍ରି ହେବ କିନ୍ତୁ ।

ମଞ୍ଜୁଳା ବୁଦ୍ଧିମତୀ ।

ସେ କଥାରେ ଶ୍ଳେଷ ମିଶାଇ କହିଲା, 'ଚମତ୍କାର କଳ୍ପନା ଆପଣଙ୍କର । ମୁଁ ପ୍ରସ୍ତୁତ ଅଛି ! ଜୋତା ଦୋକାନ କଲେ କିନ୍ତୁ ମୋତେ ଭୁଲିବେ ନାହିଁ । ଟୋପି ପାଇଁ ଯେମିତି ମୋର ମୁଣ୍ଡ, ଯୋତା ପାଇଁ ସେମିତି ମଧ ମୋର ଗୋଡ଼ କାମରେ ଲାଗି ପାରିବ ।' କଥାଟା କହିଦେଇ ଦଉଡ଼ି ଯାଉ ଯାଉ ଖିଲ୍ ଖିଲ୍ କରି ହସି ଉଠିଲା ମଞ୍ଜୁଳା । ମୋତେ ସେ ଗୋଟାଏ ଠିକଣା ଜବାବ ଦେଇ ପାରିଛି ବୋଲି ମଞ୍ଜୁଳାକୁ ପାଖକୁ ଡାକିଲି । ତା' କାନରେ ତୁନି ତୁନି କହିଲି, 'ଯେଉଁଦିନ ତମର ଚରଣ ଯୁଗଳକୁ ପୁଞ୍ଜିକରି ମୁଁ ଜୋତା ଦୋକାନ ଆରମ୍ଭ କରିବି, ସେ ଦୋକାନର କଣ ନାମକରଣ କରିବି ଜାଣ ମଞ୍ଜୁଳା ?'

ମଞ୍ଜୁଳା ଆଖିରେ ପ୍ରଶ୍ନବାଚକ ତିଆରି କରି ପଚାରିଲା, କଣ ? 'ଶ୍ରୀ ଚରଣ କମଳେଷୁ ପାଦୁକାଳୟ'। ଏତେ ହସିବାର ଆଉକେବେ ଦେଖି ନ ଥିଲି ମଞ୍ଜୁଳାକୁ । ଏଇ ମଞ୍ଜୁଳା, ଆଜି ବହୁଦିନ ପରେ ବହୁଦୂରରୁ ଚିଠି ଦେଇଛି । ସେ ଲେଖିଛି, ଠିକ୍ ତା'ର ଯେମିତି ଗୋଟିଏ ବହି ଅଛି, ଗୋଟିଏ କଲମ ଅଛି, ଆଉ ଗୋଟାଏ ବିଲେଇ ଅଛି, ଠିକ୍ ସେମିତି ତା'ର ନିତାନ୍ତ ନିଜସ୍ୱ ଫର୍ମାସୀକରା ଗୋଟିଏ ଗପ ମୋ ଠାରୁ ଚାହେଁ, ଯାହାକୁ ସେ ତାର ବନ୍ଧୁ ମହଲରେ ଦେଖାଇ ଗର୍ବରେ କହି ପାରିବ 'ଏ ମୋର ଗପ'।

ଠିକ୍ ଏଇ କଥାଟା ଏତେ ଦୂରଦେଶରେ ଆଜି ବହୁଦିନ ପରେ ମଧ ତମ କଥା ମନେ ପକାଇ ଦେଲା । ତମେ ମୋର ଗପ ଭଲପାଅ ବୋଲି କୁହ, ଆଉ ଠିକ୍ ଏହି ନିରୀହ ମଞ୍ଜୁଳାପରି ତମେ ଦିନେ ମୋଠାରୁ ଗପ ଦାବି କରିଥିଲ ।

ତମକୁ ଦେଇ ପାରି ନ ଥିଲି । ମଞ୍ଜୁଳାକୁ ମଧ ଦେଇ ପାରିବି ନାହିଁ । ସେ ମୋ ଅପେକ୍ଷା ମୋର ଗପକୁ ବେଶୀ ଭଲ ପାଏ, ତାକୁ ବା ମୁଁ କିପରି କ୍ଷମା କରି ପାରନ୍ତି ?

ମଞ୍ଜୁଳା ପୁଣି ଆନ୍ତରିକ ଶୁଭ କାମନା ଜଣାଇଛି, 'ଆପଣଙ୍କର କଲମର ଜୟ ହେଉ । ଆପଣଙ୍କର ସୁନାର ଦୁଆତ କଲମ ହେଉ ।

ନିର୍ବୋଧ ମଞ୍ଜୁଳା କଣ ଜାଣେ ଯେ ଏଇ ଧନହୀନର ଜୀବନରେ କେବେ ଯଦି ତା'ର ଦୁଆତ କଲମ ସୁନାର ହୋଇଯାଏ, ତାହାହେଲେ ସେ ସର୍ବ ପ୍ରଥମ, ସୁନାର ଦର କମିଯିବା ପୂର୍ବରୁ ତାକୁ ବିକ୍ରୀ କରି ଦେଇ ତା ପାଇଁ ଆଉ କିଛି ଶାଡଲୁଗା ତିଆରି କରିନେବ ?

ଏଠିକାର କଥା କୁହେ —

ଆଜି ସନ୍ଧ୍ୟାରେ ହ୍ରଦ କୂଳରେ ବସିଥିଲି । ଠିକ୍ ମୋ'ପରି ଅସଂଖ୍ୟ ନରନାରୀ ମଧ ସେଠି ବସିଛନ୍ତି ବିଭିନ୍ନ ପରିଧାନରେ, ବିଭିନ୍ନ ପରିବେଶ ମଧରେ । ଉଲାର ହ୍ରଦ କୂଳରେ ଏ ସଂଧ୍ୟା କେବଳ ମୋର ନୁହେଁ, ସମସ୍ତଙ୍କର ।

ମୁହୂର୍ତ୍ତକ ପାଇଁ ସମସ୍ତେ ଯେମିତି ସ୍ଥିର ହୋଇଗଲେ । କି ଏକ ବିରାଟ ଘଟଣା ଘଟିବା ପାଇଁ ବେଳା-ବିହାରୀ ସମସ୍ତ ଜନତା ସ୍ତବ୍ଧ ହୋଇ ଅପେକ୍ଷା କରିଛି ।

ସୂର୍ଯ୍ୟ ଦେବତା ଅସ୍ତାଚଳ ସ୍ପର୍ଶ କରିଛନ୍ତି । ଅସ୍ତାଚଳ ନୁହେଁ ପୃଥିବୀ, ନୁହେଁ ଆକାଶ । ସେ' ଯେପରି କାନ୍‌ଭାସ ଉପରେ କୌଣସି ଅପରିପକ୍ୱ ଶିଶୁ ଆର୍ଟିଷ୍ଟର ଅଯଥା ରଙ୍ଗ ବାହୁଲ୍ୟ । ପ୍ରଚୁର ରଙ୍ଗ । ସେଇ ଉଜ୍ଜ୍ୱଳ ଲାଲ ରଙ୍ଗ ଆସି ପଡ଼ିଛି ଶାଯିତା

ହ୍ରଦ-ନାୟିକାର କୃଷ୍ଣ-ନୀଳ କବରୀ ଉପରେ । କିନ୍ତୁ ଯେପରି ସୁଶୁପ୍ତିର କୋଳରେ ମୂର୍ଚ୍ଛାୟିତା ହୋଇ ପଡ଼ିଛି ତନ୍ଦ୍ରାତୁରା ନାୟିକା । ସୂର୍ଯ୍ୟର ଆରକ୍ତ ଚୁମ୍ବନରେ ମଧ ତାର ସ୍ୱପ୍ନଭଙ୍ଗ ହୁଏନାଇଁ । ରତିମୁଗ୍‌ଧା କାମିନୀ ପରି ତଥାପି ଶୋଇ ରହେ ଉଲାର ହ୍ରଦ । ସ୍ଥିର, ନିଶ୍ଚେଷ୍ଟ ।

କିନ୍ତୁ ଏ କଣ ହେଲା ! ଆହୁରି ରଙ୍ଗ ! ଚାହୁଁ ଚାହୁଁ ମୁହୂର୍ତ୍ତକ ଭିତରେ ଯେପରି ଅସଂଖ୍ୟ ମେଘ ହୋଲି ଖେଳି ଲାଲ ହୋଇ ଯାଇଛନ୍ତି । କାହିଁ ମଝି ଆକାଶରେ ଦିଶାହରା ନିଛାଟିଆ ଶ୍ୱେତ ମେଘ ମାଳାର ପକ୍ଷରେ ମଧ ରଙ୍ଗ ଲାଗିଛି । କପୋତ ଯୂଥପରି ଏକ ସଙ୍ଗରେ ଅସଂଖ୍ୟ ସୁବର୍ଣ୍ଣ ପରୀ ଯେପରି ଆକାଶରେ କୋଣେ କୋଣେ ଉଡ଼ି ବୁଲୁଛନ୍ତି ।

ହାୟରେ ଦୁର୍ବଳ ଲେଖନୀ ! କ୍ଷମା କର ସୁଜାତା ! ମୁଁ କିପରି ବର୍ଣ୍ଣନା କରିବି ଆଜିର ଏଇ ବର୍ଣ୍ଣ ଉତ୍ସବ ।

ମୋ ପାଖରେ ଗୋଟିଏ କ୍ଷୁଦ୍ର ସୁନେଲୀ ତରୀ । ଆରପଟେ ଦୁଇଟି ବିଦେଶୀ ତରୁଣ ତରୁଣୀ ବସିଛନ୍ତି । ତରୁଣୀଟିର ମୁକୁଳା ପାଦର ଧାରେଧାରେ କିଏ ଯେମିତି ସୁନାର ଅଳତା ଲେପି ଦେଇଛି । କି ଆଶ୍ଚର୍ଯ୍ୟ ।

ଦେଖ, ଆଗକୁ ଦେଖ, ହିମାଳୟର ଶୁଭ୍ର ତୁଷାର ମୁକୁଟରେ ବି ଦାଉ ଦାଉ ନିଆଁ ଲାଗି ଯାଇଛି । ନାଁ, ନିଆଁ ତ ନୁହେଁ, ସୁବର୍ଣ୍ଣ ! ସୁବର୍ଣ୍ଣ କିରିଟୀ ହିମାଳୟ ! ଆଜି କଣ ହିମାଳୟ କନ୍ୟାର ଜନ୍ମ ଉତ୍ସବ ?

ଚାରିଆଡେ ଖାଲି ସୁନା ଆଉ ସୁନା । ମୋର ହାତ, ମୋର ପରିଧେୟ, ସବୁ ଯେପରି ସୁନା ପାଲଟି ଯାଇଛି । କେହି ପ୍ରଶ୍ନ କରୁନାହିଁ । କେହି କୌତୁହଳୀ ନୁହେଁ ? କେଉଁଠୁ ଆସିଲା ଏତେ ସୁବର୍ଣ୍ଣ ? କିଂମିଡ଼ାସର ଅକ୍ଷୟ ସ୍ୱର୍ଣ୍ଣ ଭଣ୍ଡାର କିଏ ଯେପରି ଲୁଟ କରି ପକାଉଛି । ମୋ ପାଖରେ ଆଜି ଯଦି ଥାଆନ୍ତା କୃପଣ କିଂମିଡାସ୍ ତାହା ହେଲେ ବି ସେ କୁହନ୍ତା ନାହିଁ ତାର ସୁବର୍ଣ୍ଣର ଅପବ୍ୟୟ କରାଯାଇଛି ବୋଲି ।

କ୍ଷମା କରିବ, ସାମାନ୍ୟ କବିତ୍ୱ କଲି । ମୁଁ କବି ନୁହେଁ । ମୁଜ୍‌ତବା ଆଲୀଙ୍କର ସୁଇଜରଲ୍ୟାଣ୍ଡ ସୂର୍ଯ୍ୟାସ୍ତରେ ଅନୁପ୍ରାଣିତ ହୋଇ ଏତେ ଗୁଡାଏ ଲେଖି ପକାଇଲି । ମୁହୂର୍ତ୍ତକର ପରି ସରିଗଲା ଏ ବର୍ଣ୍ଣ ଉତ୍ସବ । ତା'ପରେ ଅନ୍ଧକାର । ଆକାଶରେ କେତୋଟି ଶଙ୍କିତ ତାରା ଉଇଁ ଆସିଥିଲେ ।

ମୁଁ ଭାବୁଥିଲି ତମ କଥା । ସେ ମୁହୂର୍ତ୍ତରେ ଯଦି ତମେ ଥାନ୍ତ ମୋ ପାଖରେ ତାହାହେଲେ ତୁମର ସେଇ ସୁବର୍ଣ୍ଣ କେଶଗୁଚ୍ଛକୁ ମୁଁ କି ତୃପ୍ତି, କି ଆନନ୍ଦରେ ଆଘ୍ରାଣ କରି ଥାଆନ୍ତି ।

ଠିକ୍ ମୋ'ରି ପାଖରେ ଡଙ୍ଗା ଆରପଟକୁ ସେଇ ଦୁଇଟି ଭିନ୍ନଦେଶୀ ତରୁଣ ତରୁଣୀ ବସି ରହିଚନ୍ତି । ଇସ୍, ସେମାନଙ୍କ ଦେହରେ କେତେ ଅଳ୍ପ ପରିଚ୍ଛଦ କିନ୍ତୁ ସ୍ୱାସ୍ଥ୍ୟବତୀ ନାରୀଟିର ବିସ୍ତାରିତ ମୃଣାଳ ଦୁଇବାହୁ ବେଶ୍ ସୁନ୍ଦର ଦେଖା ଯାଉଥିଲା । ସେମାନେ ବୋଧହୁଏ ଅଲଟ୍ରା ଭାୟୋଲେଟ ରଶ୍ମି ସଂଗ୍ରହ ପାଇଁ ବସି ରହିଥିଲେ ।

ଆହୁରି ଅନ୍ଧାର ହୋଇ ଆସିଲାଣି । ସେମାନେ ଦୁଇଜଣଯାକ ଡଙ୍ଗା ଆରପଟକୁ ଚାଲିଯାଇ ମୋର ଦୃଷ୍ଟିସୀମାରୁ ନିଜକୁ ନିରାପଦ କରି ସାରିଲେଣି ।

ସେମାନେ କଥାବାର୍ତ୍ତା କରୁଛନ୍ତି । ବେଳେ ବେଳେ ତରୁଣୀଟିର ଅକୁଣ୍ଠିତ ହସର ହିଲ୍ଲୋଳ ଭାସିଆସୁଛି । ସେମାନଙ୍କ ଭାଷା ମୁଁ ବୁଝି ପାରୁନାହିଁ । କିନ୍ତୁ ତଥାପି ମୁଁ ଜାଣେ ସେମାନେ ପରସ୍ପରକୁ ଆଦର କରୁଛନ୍ତି । ସେମାନଙ୍କର ଅସ୍ଫୁଟ ଗୁଞ୍ଜନରୁ ମୁଁ ବୁଝିପାରୁଛି ଏକ ଅପରର ସାନ୍ନିଧରେ ମୁଗ୍ଧ ।

ତମେ ତ ଶୁଣିଚ ପାରାବତ ଦମ୍ପତିର ପ୍ରୀତି ଗୁଞ୍ଜନ, ତମେ ତ ଶୁଣିଚ ବୃକ୍ଷ ଶାଖାରେ ବିରହିଣୀ କପୋତୀର କାତର ବିଳାପ ? କି ଭାଷା କୁହନ୍ତି ସେମାନେ ? ଭଲ ପାଇବା ପାଇଁ କୌଣସି ନିର୍ଦ୍ଦିଷ୍ଟ ରାଷ୍ଟ୍ରଭାଷାର ପ୍ରୟୋଜନ ହୁଏ ନାହିଁ । ସେ ଭାଷା ଦେଶକାଳର ସୀମା ଲଂଘନ କରି ମୁକ୍ତ, ବନ୍ଧନ ହୀନ, ସାବଲୀଳ ଓ ସାର୍ବଜନୀନ । ହ୍ରଦ କୂଳରେ ଏକାକୀ ବସିବସି ଆଉ ଦର୍ଶନ ଚର୍ଚ୍ଚା କରିବାକୁ ଇଚ୍ଛା ହେଲା ନାହିଁ ।

କିଛି ସମୟ ପରେ ପୁଣି ଏଇ ରେସ୍ତୁରାଁକୁ ଫେରି ଆସିଛି । 'କାଫେ ଡ଼ି ବଲଭେଡ଼ିର' । ଅଜବ ଯାଗା ଏଇ ରେସ୍ତୁରାଁ । ଆଉ ଏଠି ମିଳନ୍ତି ବହୁ ଅଦ୍ଭୁତ ଧରଣର ଜୀବ । ମୁଁ ସବୁବେଳେ ଏଇ ନିଭୃତ କୋଣରେ ବସିବାରେ ଅଭ୍ୟସ୍ତ । ଏଠିକାର ଫ୍ରିକ୍ୱେଣ୍ଟରସ୍‌ମାନେ ମଧ ମୋତେ ଏଠି ଦେଖିବାକୁ ଅଭ୍ୟସ୍ତ ହୋଇଗଲେଣି । ପ୍ରାୟ ଦଶଟା ବାଜିବ । ଏ ପର୍ଯ୍ୟନ୍ତ କାହିଁ ଶେଖ୍ ମନସୁର୍ ଆସିନାହିଁ । ଆଜି ପୂରା ଗୋଟାଏ ଦିନ ସେ ନେଇଥିଲା ତା'ର ଚାଲ୍ ଭାବିବାପାଇଁ, ମୋର ଘୋଡ଼ା ଲାଗି ଗୋଟାଏ ଚମତ୍କାର ସ୍କୋୟାର ଖାଲି ଥିଲା । ଓଃ, ସେ' ଯଦି ସେଟାକୁ ଗାର୍ଡ କରି ନଥାଏ ତାହାହେଲେ ଆଜି ରକ୍ଷା ନାହିଁ ମନସୁର୍‌ଜୀ, କିସ୍ତିମାତ୍ ! ଆଉ ତା'ପରେ ମନ୍‌ସୁର୍‌ର ହାତ ତିଆରି ଗୋଟାଏ କକ୍‌ଟେଲ... ଆଉ ଖଣ୍ଡେ ବିଭାରିଆନ୍ ସିଗାର୍ !

ମନସୁର୍ ଚମତ୍କାର କକ୍‌ଟେଲ୍ ତିଆରି କରେ । ଆଉ ମୁଁ ଯେତେବେଳେ ଉର୍ଦ୍ଧ୍ୱବାହୁରେ କକ୍‌ଟେଲ୍‌ଟାକୁ ଧରି ଅତି ଗମ୍ଭୀର ସ୍ୱରରେ ତମର ଦୀର୍ଘ ଜୀବନ କାମନା କରେ ସେତେବେଳେ ମନ୍‌ସୁର ବି ଭାବପ୍ରବଣ ହୋଇଯାଏ । ସେ ତାର ବୁଦାଏ ଦାଢି ଭିତରୁ ଦୁଇଟି କଳା କଳା ଓଠକୁ ମେଲାଇ କହେ 'ଆମେନ୍ !'

ମନ୍‌ସୁର୍ ସମଝଦାର । ମନସୁର୍ ମୋର ଦାବା ଖେଳରେ ଦୋସ୍ତ୍ । ଆମେ ଦୁଇଜଣ, 'ଏକ ବୋତଲେର ଇୟାର୍ ।' ଆର ଚିଠିରେ ମନ୍‌ସୁର୍ କଥା ଲେଖିବି ବିସ୍ତୃତ କରି । ମନ୍‌ସୁର୍ ଆସିଲା ନାହିଁ ।

ଦୁଇଟା ପେଗ୍ ଖାଇସାରି ମଧ ଦେହର ସାଧାରଣ ଉତାପ ଫେରିଲା ପରି ଲାଗୁନାହିଁ, ଖାଇବାକୁ ଯିବା ପୂର୍ବରୁ ଆଉ ଗୋଟିଏ ପେଗ୍ ଖାଇବାକୁ ପଡ଼ିବ । ତମେ ଥିଲେ ମୋତେ ଏଇ ପେଗ୍ ପାଇଁ ଅନୁମତି ଦେଇଥାନ୍ତ କି ନାହିଁ ସନ୍ଦେହ ।

ରେସ୍ତୁରାଁ ଜମି ଆସୁଛି ।

ନୈଶ-ଆମୋଦ-ସନ୍ଧାନୀର ଦଳ ଧୀରେ ଧୀରେ ଆସି ଆସର ଜମେଇ ଦେଲେଣି । ଏଇ ନେଲୀ ଆସୁଛି, ଦୁଇ ସୁନୀଳ ଆଖିରେ ତାର ଅତିଥି-ବୃନ୍ଦକୁ ସମୀକ୍ଷା କରି କରି ।

ତମେ ନେଲୀକୁ ଚିହ୍ନିନାହଁ ନାଁ ସୁଜାତା ? ଆର ଥରକୁ ପରିଚୟ କରେଇ ଦେବି । ଧୀରେ ଧୀରେ ରେସ୍ତୁରାଁର ବାୟୁମଣ୍ଡଳ ବଦଳି ଯାଉଛି । ଦଳେ ବିଦାୟ ନେଉଛନ୍ତି, ଆଉ ଦଳେ ନୂଆ ପୋଷାକରେ ନୂଆ ନିଶା ନେଇ ଆସୁଛନ୍ତି ।

ଅନେକ ଡ଼େରି ହୋଇଗଲାଣି । ମତେ ଶୀଘ୍ର ଶେଷ କରିବାକୁ ହବ । ନେଲୀ ମୋ'ର ଟେବୁଲ ପାଖରେ ଛିଡା ହୋଇ ଇଂରାଜୀ କଥାରେ ଫରାସୀ ଆକ୍‌ସେଣ୍ଟ୍ ଦେଇ ମତେ ବିବ୍ରତ କରୁଛି । କହୁଛି, 'ମୋସିଓ, ଆପଣଙ୍କର ପ୍ରେୟସୀର ଚିଠି ପାଇଁ ଆଉ ଡାକବାହୀ ଉଡାଜାହାଜ ଅପେକ୍ଷା କରି ପାରିବ ନାହିଁ ।'

ଷ୍ଟୁପିଡ୍ !

ଆପାତତଃ ସୁରାତ୍ରି ସୁଜାତା
ତୁମର
ମୁଁ

# ପଞ୍ଚମୀ

'କାଫେ ଡ଼ି ବଇଭେଡ଼ିର୍'
୧୭ ଡିସେମ୍ବର

ପ୍ରେମାସ୍ପଦା ସୁଜାତା,

ନେଲୀ ଅତ୍ୟନ୍ତ ମନୋଯୋଗ ସହକାରେ ମନ୍‌ସୁର୍ ଓ ମୋ'ର ଚେସ୍ ଯୁଦ୍ଧକୁ ଉପଭୋଗ କରୁଥିଲା । ଅତି ନଗଣ୍ୟ ଗୋଟିଏ ପନ୍‌ର ହିମ୍ମତ୍ ନେଇ ଯେତେବେଳେ ମୋ'ର ଉଜୀର୍ ଯାଇ ମନସୁର୍‌ର ରାଜାର ସାମ୍ନା ସାମ୍ନି ଠିଆ ହେଲା ହଠାତ୍ ତା'ର ଛୋଟ ଓଠରେ ଅଳ୍ପ ସ୍ମିତହାସ୍ୟ ପହଁରାଇ କହି ଉଠିଲା ନେଲୀ,

'ଲେ ରଏ ଏଷ୍ଟମର୍ଟ, ଭିଭେ ଲେ ରଏ'



ଫରାସୀ ଭାଷାରେ ମୋର ସାଧାରଣ ଜ୍ଞାନ ମଧ୍ୟ ନାହିଁ । ଅକୁଣ୍ଠିତ ଭାବରେ ମୋ'ର ଦାରିଦ୍ର୍ୟ ପ୍ରକାଶ କରି ଚାହିଁ ରହିଲି ନେଲୀକୁ, ଅର୍ଥ-ତମେ କଣ କହିବାକୁ ଚାହଁ ? କୌଣସି ପରିଶ୍ରମ ନ କରି ସଙ୍ଗୀତ ପରି ଗାଇଗଲା ନେଲୀ ତା'ର ଇଂରାଜୀ ତର୍ଜମା, The king is dead, Long Live the King !

ମନ୍‌ସୁର୍‌ବୀର ରାଜା ବିନା ସର୍ତ୍ତରେ ଆତ୍ମସମର୍ପଣ କଲା । ତିନିଦିନ ବ୍ୟାପୀ ଏକ ଖଣ୍ଡ ଯୁଦ୍ଧର ସମାପ୍ତି ହୋଇଗଲା ଏଇ ମୁହୂର୍ତ୍ତରେ ।

ଛକ ଛକ ବିଚିତ୍ର ଚେସ୍‌ବୋର୍ଡ ଉପରେ ପୁଣି ଥରେ ସାମରିକ କାଇଦାରେ ଠିଆ ହୋଇଗଲେଣି ସୈନ୍ୟ ସାମନ୍ତ । ଦ୍ୱିତୀୟ ପାନିପଥ ସମର । ମନ୍‌ସୁର୍‌ର ପରାହତ ରାଜା ବି ପୁଣି ଥରେ କମର୍ ବାନ୍ଧି ଠିଆ ହେଲାଣି, ସହିତ ଗଜରାଜର ରାଜଛତ୍ର ତଳେ । ଯୁଦ୍ଧଂ ଦେହି ।

ମନ୍‌ସୁର୍‌ର ରାଜା । ପରାହତ ହେଲେ ମଧ ଅମର ସିଏ । ସମୟର ଜୁଆରରେ ଭାସି ଗଲାଣି ରାଜତନ୍ତ୍ର, କିନ୍ତୁ ଜୁଆରର ପ୍ରତିକୂଳରେ ଠିଆ ହୋଇଛି ଏଇ ଚେସ୍‌ର ରାଜା, ଠିକ୍ ନାଲିପାନ୍, ଠିକିରୀ, ଚିଡ଼ିଆ ଓ କଳାପାନ ରାଜା ପରି । କିନ୍ତୁ ଏମାନଙ୍କୁ ଯିଏ ଅମର କରିଗଲେ, ଆଜି କାହିଁ ସେ ଇଜିପ୍‌ଟର ରାଜା ?

ମନ୍‌ସୁର୍ କିନ୍ତୁ ତା'ର ରାଜାର ପରାଜୟ ଏତେ ସହଜ ଭାବରେ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହଁ । ନାଁ, ତା ମତରେ ହାରିବାଟା ପୂରାପୂରି ହାରିବା । ଦାବା ଖେଳ ଚାନ୍‌ସର ଖେଳ ନୁହଁ, ପୂରାପୂରି ବୁଦ୍ଧିର ।

ଦୁଇପକ୍ଷର ସ୍ୱାକ୍ଷରିତ ସର୍ତ୍ତ ଅନୁଯାୟୀ ଅତି ମନୋଯୋଗ ସହକାରେ କକ୍‌ଟେଲ ତିଆରି କରୁଛି ମନ୍‌ସୁର୍ ।

ଗତ ତିଠିରେ ଲେଖିଥିଲି ମନ୍‌ସୁର୍ ପାନୀୟ-ବିଶାରଦ ।

ମନ୍‌ସୁର୍‌ର ଇଷଦ୍ ଲମ୍ୱାମୁହଁରେ କାନ ପାଖରୁ ଚିବୁକ ପର୍ଯ୍ୟନ୍ତ ଦୁଇଗାଲ କୁଞ୍ଚିତ ଘନ ଦାଢ଼ି । ପ୍ରୁନ୍ କରାଯାଇଛି ବାଦ୍‌ଶାହୀ ପାଟର୍ଣ୍ଣରେ । ଅନେକଟା ମୋଗଲାଇ ମୋଗଲାଇ । ଆଜି ମନ୍‌ସୁର୍ ଦାଢ଼ିରେ ଜାଫ୍ରାନ୍ ସ୍ପ୍ରେ କରିଛି । ତା'ର ଜାଫ୍ରାନ-ସିକ୍ତ କୁଟୀଳ ଶ୍ମଶ୍ରୁ ଯେପରି ଚୋରୀ କରି ଆଣିଛି ଅସ୍ତସୂର୍ଯ୍ୟର ଶେଷ କିରଣ । ମନ୍‌ସୁର ବସି ତା'ର ଇଷଦ୍ ରକ୍ତାଭ ଆଖିରେ ତା'ର କ୍ଷୁଦ୍ର ପାନୀୟ ଅନୁଷ୍ଠାନଟିକୁ ସମୀକ୍ଷା କରୁଛି । ଆଖିରେ ସ୍ଥିତଧୀ ଦାର୍ଶନିକର ନିର୍ଲିପ୍ତ ପ୍ରଶାନ୍ତି ।

ସାମ୍ନାରେ ଦୁଇଟି ପତଳା ଟୁକ୍ ଟୁକ୍ ଚାଇନା କ୍ଲେର କପ୍‌ରେ ବ୍ଲାକ କଫି ମହଜୁତ ରହିଛି । ବାଁ ହାତରେ ରମ୍‌ର ଭାରୀ ବୋତଲଟାକୁ ଧରି ଗୋଟାଏ ଟେବୁଲ୍ ସ୍ପୁନ୍ ଉପରେ ଢ଼ାଳୁଛି ମନ୍‌ସୁର୍ .... ।

ଓସ୍ତାଦୀ ହାତ । ବହୁଯୁଗର ଅକ୍ଳାନ୍ତ ସାଧନାରେ ଦୋରସ୍ତ ହୋଇଯାଇଛି । ଚାମୁଚ୍‌ର କ୍ଷୁଧାର୍ତ୍ତ ଖାଲୁଆ ପେଟ ଭର୍ତ୍ତି ହୋଇ ଆସୁଛି ଆସ୍ତେ ଆସ୍ତେ । ସୁଧାପାତ୍ର ଅଧିକାରିଣୀ ମୋହିନୀ ଏତେ ସାବଧାନ ହୋଇ ଅମୃତ ବଣ୍ଟନ କରୁଥିବେ କି ନାଁ ସନ୍ଦେହ ।

ଏକ- ଦୁଇ- ତିନି- ଚାରି ।

ପୂରାପୂରି ଚାରି ଚାମଚ୍ ଭରି ରମ୍ ପ୍ରତ୍ୟେକ କପ୍‌ରେ ।

ରମ୍‌ର ବୋତଲ ଥୋଇ ଦେଇ, ଲିମନ୍-କ୍ୱାସ୍‌ର ବୋତଲ ଉପରେ ହାତ ରଖିଲା ମନ୍‌ସୁର୍ । ପାନୀୟ ପ୍ରସ୍ତୁତି ପ୍ରତି ମନ୍‌ସୁର୍‌ର ଦୃଷ୍ଟିକୋଣ ନିତାନ୍ତ ବୈଧାନିକ । ତା'ର ପ୍ରଣାଳୀ ଅଙ୍କ ଅଧିକେ ଲାବୋରେଟରି ସିଦ୍ଧ ।

ଆଜି ରବିବାର ।

ସପ୍ତାହକରେ ମାତ୍ର ଏଇ ଦିନଟି ପାଇଁ କାଫେ ଡ଼ି ବଲ୍‌ଭେଡ଼ିର ନୃତ୍ୟ ପ୍ରାଙ୍ଗଣ ସାରା ରାତ୍ରି ମୁକ୍ତ ରହେ । ଆଜି ଯେପରି ଗୋଟିଏ ମହୋତ୍ସବ । ରାତି ବାରଟା ବାଜିବାକୁ ଆଉ ଅଳ୍ପ ସମୟ ବାକୀ ଅଛି ।

ବାହାରେ ମହାନଗରୀ ରାକ୍ଷସର ନିଦ ଶୋଇଛି ।

କିନ୍ତୁ ବହୁ ତୃଷାର୍ତ୍ତ ବିଳସୀମାନଙ୍କ ପାଇଁ ଯେପରି ନିମନ୍ତ୍ରଣର ଆକ୍ଷିରେ ଅପେକ୍ଷା କରି ରହିଛି ଏଇ ବାସକସଜ୍ଜା କାଫେର ନୃତ୍ୟ-ପ୍ରାଙ୍ଗଣ । ଆମର ଚାରିପଟର ବକ୍‌ସ ଗୁଡ଼ିକ ଭର୍ତ୍ତି ହୋଇଗଲାଣି । ନୂଆ ରୂପରେ ନୂଆ ସ୍ୱପ୍ନ ନେଇ ଦଳ ଦଳ ହୋଇ ଆସୁଛନ୍ତି ଆମୋଦକାଙ୍ଗାଳର ଦଳ ।

ଅର୍କେଷ୍ଟ୍ରା ଆରମ୍ଭ ହୋଇଗଲାଣି ।

ଆଜି ଏଇ କାଫେରେ ଆନନ୍ଦର ହରିଲୁଟ୍ ।

ଆହୁରି ଲୋକ ଆସୁଛନ୍ତି । ତଳର ପ୍ରତ୍ୟେକଟି ଟେବୁଲ ଅତିଥିପୂର୍ଣ୍ଣ ହୋଇଗଲାଣି । ପ୍ରତି ଟେବୁଲ ଉପରେ ପର୍ଯ୍ୟାପ୍ତ ପରିମାଣରେ ପୋର୍ଟ୍‌ୱାଇନ୍ ଆଉ ପଟାଟୋ ଚିପ୍‌ସ୍ । ପୂରାପୂରି ଅନ୍ ଦି ହାଉସ୍ ଏଟା କାଫେର ରବିବାସରୀୟ ଅତିଥି ସତ୍କାର ଭିତରେ ଯାଏ ।

ସତେ ସୁଜାତା, ଗୋଟାଏ ଗୋଟାଏ ମୁହୂର୍ତ୍ତରେ ଅତି ଆଶ୍ଚର୍ଯ୍ୟ ଲାଗେ । ମନୁଷ୍ୟ କେତେ ଆମୋଦ କାଙ୍ଗାଳ । ଆକ୍ଷିରେ ଅଳ୍ପ ନିଶା, ମନରେ ଟିକିଏ ଚମକ, ଏଥିପାଇଁ ନିଶାର୍ଦ୍ଧରେ କେତେ ଆକୁଳ ପ୍ରାଣ, ବ୍ଲଡ ହାଉଣ୍ଡ ପରି ଆମୋଦର ଗନ୍ଧ ପାଇ ପାଇ ଏମିତି ସଂଖ୍ୟାତୀତ କାଫେରେ ରାତ୍ରି ଯାପନ କରିବାକୁ ଛୁଟେ । ଏମାନେ ପ୍ରତ୍ୟେକ ଯେପରି ସେଇ କିମ୍ବଦନ୍ତୀ ପ୍ରସିଦ୍ଧ ତୃଷାର୍ତ୍ତଶଶକ । ଏଇ କାଫେର ଚନ୍ଦ୍ରମଣ୍ଡଳରେ ମୃତ୍ୟୁ ହେଉ ଏମାନଙ୍କର । ଏମାନଙ୍କ ରୁଚି, ସୌନ୍ଦର୍ଯ୍ୟବୋଧ ସବୁ ଯେପରି ଏମାନଙ୍କର ଟେବୁଲ ଉପରେ ସଜା ହୋଇଥିବା ଫୁଲଦାନୀର କାଗଜର ଫୁଲ ପରି ଗନ୍ଧହୀନ ଆଉ ସହଜ ଲଭ୍ୟ ।

ମନସୁର୍‌ର କ୍ଷୁଦ୍ର କୁଟୀରଶିଳ୍ପର କାର୍ଯ୍ୟ ପ୍ରାୟ ସମାପ୍ତ ହେଲାଣି ।

କକ୍‌ଟେଲ ପ୍ରସ୍ତୁତ ।

ଚାମୁଚରେ ଘାଣ୍ଟୁ ଘାଣ୍ଟୁ ପଚାରିଲା ମନ୍‌ସୁର୍ 'ମନେରହିଲା ମିକ୍‌ସିଂ ?' ମୁଁ ମୁଣ୍ଡ ହଲାଇ ଅସମ୍ମତି ଜଣାଇଲି ।

ବିରକ୍ତିର କଣ୍ଠରେ କହିଲା ମନ୍‌ସୁର୍ 'ତମେ ଅତ୍ୟନ୍ତ ଅମନଯୋଗୀ ଛାତ୍ର, ବ୍ଲାକ୍ କଫିରେ ଚାରି ଚାମଚ କରି ରମ୍, ଚାମୁଚେ ଲିମନ୍, ସାମାନ୍ୟ ଜିଞ୍ଜର ଆଉ ଚିନି । ବାସ୍, ରମ୍ ବ୍ରାଇଅଟ୍' ।

'ରମ୍ ବ୍ରାଇଅଟ', ଶିଶୁ ଛାତ୍ର ପରି ମନ୍‌ସୁର୍ କଥାର ପୁନରାବୃତ୍ତି କଲି ।

ବର୍ତ୍ତମାନ ଟୋଷ୍ଟ କରିବାର ପାଳି ।

ପ୍ରାୟ ସବୁବେଳେ ଟୋଷ୍ଟ କରିବାର ନେତୃତ୍ୱ ନିଏ ମନ୍‌ସୁର୍, ଆଉ ମୁଁ ମେରୀ ପଛରେ ନିର୍ଦ୍ଦୋଷ ମେଷ ଶିଶୁପରି ଅନୁସରଣ କରେ କେବଳ । ତମର ଯଦି କେବେ ସୁଯୋଗ ହୁଏ ସୁଜାତା ଶୁଣିବ ମନ୍‌ସୁର୍‌ର ଟୋଷ୍ଟ, ଶୁଣିବାପରି ଜିନିଷ କିନ୍ତୁ । ପୂରାପୂରି କବିତା । ଆଶ୍ଚର୍ଯ୍ୟ, ଏଇ ଅଳ୍ପ ସମୟ ତଳେ ଚାମୁଚ ଚାମୁଚ କରି ମାପୁଥିବା ମଦ୍ୟକୃପଣ ମନ୍‌ସୁର୍ ହଠାତ୍ କିପରି ଏତେ ବେଶୀ ଉଦାର ହୋଇଯାଏ । ପୃଥିବୀର ଶ୍ରେଷ୍ଠ ମନୀଷୀମାନଙ୍କ ଠାରୁ ଆରମ୍ଭ କରି ଏଇ ହୋଟେଲର ପାନୀୟ ପରିବେଷକ ପର୍ଯ୍ୟନ୍ତ ଅସଂଖ୍ୟ ଲୋକଙ୍କର ସ୍ୱାସ୍ଥ୍ୟ ପାଇଁ ସେ ତା'ର ବହୁ ମୂଲ୍ୟବାନ ପାତ୍ର ନିଃଶେଷ କରିଯାଇଛି । କାହିଁ ଇଲିୟଟ୍ ବା ହୁଇଟ୍‌ମ୍ୟାନ୍‌ଙ୍କ କବିତାର ଭାଷା ଓ ମର୍ମକୁ ଭାରତ ସଂବିଧାନରେ 'ପ୍ରାରମ୍ଭିକ'ର ଫର୍ମା ଭିତରେ ପୂରାଇ ନଗଦ ଡ଼ର୍ବିରେ ଜିଣିଥିବା କେଉଁ ସୁଇଜରଲ୍ୟାଣ୍ଡ୍ ପାଳିତ ଘୋଡ଼ାର ସ୍ୱାସ୍ଥ୍ୟ ପାଇଁ ଅକୁଣ୍ଠିତ ମଙ୍ଗଳ କାମନା କରେ ।

ସାଧାରଣ ଲୋକର ମାପକାଠିରୁ ବହୁ ପରସ୍ପର ବିରୋଧୀ ଧାରଣାକୁ ଆଣି ଏକତ୍ରିତ କରିବାରେ ମନ୍‌ସୁର୍‌ର ଅସାଧାରଣ ଦକ୍ଷତା ଅଛି । ଏଟା ପୂରାପୂରି ତା'ର ଦର୍ଶନ ପ୍ରସୂତ । ପୃଥିବୀର ପ୍ରତ୍ୟେକ ପଦାର୍ଥ ଠିକ ଅନ୍ୟ ଏକ ଜିନିଷପରି ଛୋଟ ବା ବଡ଼, ଅଳ୍ପ ଉଦାର ଦୃଷ୍ଟିରୁ ଦେଖିଲେ ଏଇ ବଡ଼ ଛୋଟର ତୁଳନାତ୍ମକ୍ ସଂପର୍କଟାକୁ ମନୁଷ୍ୟ ସହଜରେ ଡେଇଁଯାଇପାରେ ।

କିନ୍ତୁ ଆଜି ମତେ ମନ୍‌ସୁର୍ ସତକୁ ସତ ଆଶ୍ଚର୍ଯ୍ୟ କରିଦେଲା । ଉର୍ଦ୍ଧ୍ୱବାହୁରେ କକ୍‌ଟେଲର ପିଆଲା ଟେକି ଧରି ଗମ୍ଭୀର, ବିଶ୍ୱପ୍ରେମୀ, ବୈଦିକ ଋଷିପରି ଆରମ୍ଭକଲା ବେଦ ଉଚ୍ଚାରଣ :

ସର୍ବେ ଭବନ୍ତୁ ସୁଖୀନଃ
ସର୍ବେ ସନ୍ତୁ ନିରାମୟାଃ
ସର୍ବେ ଭଦ୍ରାଣି ପଶ୍ୟନ୍ତୁ
ମା କଶ୍ଚିଦ୍ ଦୁଃଖଭାଗ ଭବେଦ୍ ।

କକ୍‌ଟେଲ୍ ପାତ୍ରରେ ମୁହଁ ଦେଲି ।

ଲଭ୍‌ଲି ! ଦୀର୍ଘଜୀବୀ ହେଉ ରମ୍ ବ୍ରାଇଅଟ୍, ତମ ହାତର ଜୟ ହେଉ ମନ୍‌ସୁର୍‌ଜୀ । ମୁକ୍ତ କଣ୍ଠରେ ତାରିଫ୍ କଲି ମନ୍‌ସୁର୍‌ର, 'ମନ୍‌ସୁର୍‌ଜୀ ତମେ କକ୍‌ଟେଲର ଯାଦୁକର ।'

ମନ୍‌ସୁର୍ ପ୍ରଶଂସା-କାଙ୍ଗାଳ ନୁହଁ । ସେ ଜାଣେ ସେ'ଟା ତା'ର ପ୍ରାପ୍ୟ । ମୋ' କଥାର କୌଣସି ଉତ୍ତର ପାଇଲି ନାହିଁ ।

ମନ୍‌ସୁର୍‌ଜୀ ମୋଟା ମେକ୍‌ସିକ୍ୟାନ ସିଗାର୍‌ରୁ ଧୂଆଁ ଛାଡୁ ଛାଡୁ କିଙ୍ଗ୍‌ସ୍କୋୟାରର ପନ୍‌ଟାକୁ ଦୁଇପାଦ ଆଗକୁ ବଢ଼ାଇଦେଲା ।

ଅର୍କେଷ୍ଟ୍ରାର ଧମନୀ ଚଞ୍ଚଳ ହୋଇ ଉଠିଲାଣି । ହାଲୁକା ପାଦରେ କେଉଁ କଣରୁ ଥାଇ ଥାଇ ନୂଆ ନୂଆ ନର୍ତ୍ତକଯୁଗଳ ପ୍ରାଙ୍ଗଣ ଭିତରକୁ ପଶି ଆସୁଛନ୍ତି, ଏବଂ ଧୀରେ ଧୀରେ ବୁଲିବାକୁ ଆରମ୍ଭ କରୁଛନ୍ତି ଆପଣା ଆପଣା କକ୍ଷରେ । ଦେଖିଲେ ମନେହୁଏ ପ୍ରତ୍ୟେକଟି ଗ୍ରହ ସ୍ୱୟଂସଂପୂର୍ଣ୍ଣ, କସ୍ତୁରୀମୃଗପରି ନିଜର ଆମୋଦରେ ନିଜେ ଆତ୍ମବିସ୍ମୃତ ।

ଏଇ ଅଚଳା ବିଦ୍ୟୁତ୍ ପରି ହଠାତ୍ ହଲ ଭିତରକୁ ପଶି ଆସିଲା ସୁବର୍ଣ୍ଣକେଶୀ ନେଲୀ । ମସୃଣ କଳାରେଶମ୍‌ର ସ୍କାର୍ଟରେ ନେଲୀର ଦୁଧଅଳତାର ତନୁଶ୍ରୀ ଆହୁରି ଲୋଭନୀୟ ହୋଇ ଉଠିଛି । ନେଲୀର କ୍ଷୀଣ କଟି ବେଷ୍ଟନ କରି ସୁଶ୍ରୀ ତରୁଣଟିର ବାହୁ ଯେପରି ଅର୍କେଷ୍ଟ୍ରାର ତାଳେ ତାଳେ ତନ୍ୱୀ ବେତସଲତାଟିକୁ ପହଁରାଇ ନେଉଛି ।

ନେଲୀ ନୃତ୍ୟ ବିଳାସୀ । ହାଲୁକା ପାଦରେ ଘୂରି ବୁଲୁଛି ନେଲୀ, ପାଦସହିତ ପାଦ ମିଶାଇ । ସେ' ଯେପରି ଛନ୍ଦମୟୀ ତରଳ କବିତା ।

ଈର୍ଷା ହେଲା ସେଇ ଅଜ୍ଞାତ ସୁଶ୍ରୀ ତରୁଣଟି ଉପରେ । ନେଲୀ ମତେ ବହୁବାର ନାଚିବାକୁ ନିମନ୍ତ୍ରଣ କରିଛି, କିନ୍ତୁ ଆଜି ଯଦି ମତେ ସେ ଆଉଥରେ ଆସି ନିମନ୍ତ୍ରଣ କରନ୍ତା, ମୁଁ ଜାଣେନା ମୁଁ ତାକୁ ଉପେକ୍ଷାକରି ପାରିବି କି ନାଁ ।

ମନ୍‌ସୁର୍‌ର ଘୋଡା ପାହୁଲ ପକାଇ ମାଡ଼ି ଆସୁଛି । ମତେ ତାକୁ ରୋକିବାକୁ ହେବ । ମୋ'ର ପନ୍‌ର ତ୍ରିଭୁଜରେ ଦୁର୍ଭେଦ୍ୟ ଦୁର୍ଗ ପ୍ରସ୍ତୁତ ଅଛି । ପଦ୍ଧାତକ ରାଜାକୁ ଦୁର୍ଗ ଭିତରେ ଆଶ୍ରୟ ଦେଲି, ବ୍ୟାକ୍ ଟୁ ଫୋର୍ଟ !

ହୋଟେଲର ପରିଚାରିକା ହାତରେ ସଦ୍ୟ ଫୁଲର ତୁକେ ଧରି ପଶି ଆସିଲା ଆମର କ୍ୟାବିନ୍ ଭିତରକୁ, ମତେ ଲକ୍ଷ୍ୟ କରି କହିଲା 'ଆପଣଙ୍କ ପାଇଁ ଆସିଛି, ତେର ନମ୍ବର କ୍ୟାବିନରୁ' ।

ମୁଁ ଆଶ୍ଚର୍ଯ୍ୟ ହେଲିନାହିଁ । ଅପରିଚିତାଙ୍କ ପାଖରୁ ଏ ପ୍ରକାରର ଅକସ୍ମାତ୍ ଉପହାର, ଉତ୍ସବ ଦିନରେ ଅତ୍ୟନ୍ତ ସାଧାରଣ କଥା । ପ୍ରାରମ୍ଭିକ ପରିଚୟର ଅଗ୍ରଦୂତ ହୋଇ ଏମିତି ଫୁଲର ତୋଡ଼ା ପ୍ରାୟ ଆସେ ।

ହଠାତ୍ ମୋ'ର ଆଖି ବୁଲିଗଲା ତେର ନମ୍ବର କ୍ୟାବିନକୁ । ମନ୍‌ସୁର୍‌ଜୀର ମଧ୍ୟ । ନିଅନ୍ ଆଲୋକର କୁହୁଡ଼ି ଭିତରେ ଢାଙ୍କି ହୋଇ ଚିତ୍ରପଟ ପରି ବସି ରହିଛି ସୁନ୍ଦରୀ ଚାଇନା ତରୁଣୀଟିଏ । ଦେହରେ ଯେପରି ଏତେ ଟିକେ ସ୍ପନ୍ଦନ ନାହିଁ ।

ଚାହୁଁ ଚାହୁଁ ଆହୁରି ତିନି କଦମ ଡ଼େଇଁ ଆସିଲା ମନ୍‌ସୁର୍‌ଜୀର ଘୋଡା । ଏକାଥରକେ ଦୁଇଟା ଶୀକାର, ମୋର ରାଜା ଆଉ ଉଜୀର । ରାଜାକୁ ଅଗତ୍ୟା ଘରେ ଉପରକୁ ଟେକି ଦେଇ ଚଉକି ଛାଡ଼ି ଉଠି ଠିଆ ହେଲି ।

ଉପହାର ବିନିମୟରେ ମତେ ୧୩ ନମ୍ବର କ୍ୟାବିନରେ କର୍ଟେସି କଲ୍ ଦେବାକୁ ହେବ କେଇ ମିନିଟ୍ ପାଇଁ । ଏଟା ଆଭିଜାତ୍ୟର ସାଧାରଣ ଚଳନ୍ତି ଏଟିକେଟ୍ ।

ସ୍ମିତହାସ୍ୟରେ ଆଲୋକିତ ହୋଇଗଲା ମନ୍‌ସୁର୍‌ଜୀର ମୁହଁ । ମନେ ମନେ ପ୍ରମାଦ ଗଣିଲି ।

ମନ୍‌ସୁର୍ କଥାରେ ତୀକ୍ଷ୍ଣ ଶ୍ଳେଷ ହାଣି କହିଲା 'ତମର ରାଜା ଓ ରାଜ୍ୟ ଘୋର ବିପଦର ସମ୍ମୁଖୀନ ଟୁରିଷ୍ଟ୍ ! ଅଥଚ ତମେ ଏ ମୁହୂର୍ତ୍ତରେ ଯାଉଛ ଉପହାର ବିନିମୟ କରିବାକୁ । ଥରେ ଡ଼ିଉକ୍ ଅଫ୍ ଉଇଣ୍ଡ୍‌ସର ଡ଼ାହାଣ ହାତରେ ପ୍ରେୟସୀର କରପଲ୍ଲବ ଧରି ବାଁ ହାତରେ ସାରା ବ୍ରିଟିଶ ସାମ୍ରାଜ୍ୟର ମୁକୁଟକୁ ଫୋପାଡ଼ି ଦେଇ ସମଗ୍ର ପୃଥିବୀକୁ ବିସ୍ମିତ କରିଦେଇଥିଲେ । ଆଜି ତମେ ମତେ ବିସ୍ମିତ କଲ ।'

ମନ୍‌ସୁର୍ ଅତି ଉନ୍ନତ ରୁଚିର ରସିକ । ମୁଁ କଥାର ପ୍ରତିବାଦ ନକରି କେବଳ କହିଲି, 'ମୋ ରାଜା ଏତେ ଦୁର୍ବଳ ନୁହଁ ମନ୍‌ସୁର୍, ମୁଁ ବର୍ତ୍ତମାନ ଆସୁଛି ।' ପର୍ଦ୍ଦାଟେଲି ବାହାରକୁ ଗଲାବେଳେ ମନ୍‌ସୁର୍ ତା'ର ନୌକାକୁ ବାହି ଦେଇ କହିବାର ଶୁଣିଲି, 'କିସ୍ତୀ'..... ।

ତେର ନମ୍ବର କ୍ୟାବିନ ଭିତରକୁ ପଶିଲି । ସମ୍ଭ୍ରମରେ ମୁଣ୍ଡରୁ କ୍ୟାପ୍ କାଢ଼ି ଆଭିଜାତ୍ୟର ସମସ୍ତ ନିୟମ ଅନୁଯାୟୀ ଯଥା ସମ୍ଭବ ନମ୍ର ହୋଇ ମୋ'ର ପରିଚୟ ଦେଲି, 'ମୋ ନାଁ - ମୁଁ ଜାଣେ ସାମ୍ବାଦିକ ।'

ଭଦ୍ରମହିଳା ମୁହଁ ସାମ୍ନାରୁ ଚିତ୍ରିତ ସୁନ୍ଦର ଚାଇନାର ପଙ୍ଖାଟିକୁ ଟେବୁଲ ଉପରେ ରଖିଦେଇ ଠିଆ ହେବାର ଉଦ୍ୟମ କରୁ କରୁ ଇଂରାଜୀରେ ସମ୍ଭାଷଣ କରି କହିଲେ, 'ମୋ'ନାଁ ଲିନ୍, ମୁଁ ଆପଣଙ୍କ ସହିତ ପରିଚିତ ହୋଇ ଅତ୍ୟନ୍ତ ଆନନ୍ଦିତ ହୋଇଛି । ଦୟାକରି ବସନ୍ତୁ ।'

ଲୀନ୍ ଦେଖିବାକୁ ସୁନ୍ଦରୀ କହିଲେ ଅତିରଞ୍ଜନ କରାଯିବାର ଆଶଙ୍କା ନାହିଁ। ସବୁଠାରୁ ଭଲ ଲାଗିଲା ଲୀନ୍‌ର କେଇପଦ ଇଂରାଜୀ କଥାରେ ଚାଇନାର ଚନ୍ଦ୍ରବିନ୍ଦୁ ଗୁଡ଼ିକର ପ୍ରାଧାନ୍ୟ । ଅଳ୍ପ କେଇପଦ ଗତାନୁଗତିକ କଥାବାର୍ତ୍ତା ପରେ ଲୀନ୍ ମୋ ହାତରେ ଗୋଟିଏ କ୍ଷୁଦ୍ର କାଚର ପାତ୍ର ଧରାଇ ଦେଇ କହିଲେ, ନିଅନ୍ତୁ, ସାମାନ୍ୟ ମଦ ଖାଆନ୍ତୁ, ଏ ମୋ'ର ଦେଶର ମଦ । ମଦ୍ୟ ପ୍ରସ୍ତୁତି ପାଇଁ ମୋ' ଦେଶର ଅଳ୍ପ ଅଧିକେ ଖ୍ୟାତି ଅଛି । ପ୍ରାଚ୍ୟ ନୃତ୍ୟକଳାର ଏକ ଲାସ୍ୟମୟୀ ଛନ୍ଦରେ ଲୀନ୍ ହାତରେ ଗୋଟିଏ ସୁନ୍ଦର ଚାଇନାର ମଦ୍ୟପାତ୍ରରୁ ମଦ ଢାଳି ମୋ'ର ପାତ୍ର ପୂର୍ଣ୍ଣ କରୁଥିଲେ ।

ଚାଇନିଜ୍ ପାତ୍ରଟି ଏକ ଅସାଧାରଣ ମୃଣ୍ମୟ ଶିଳ୍ପର ନମୁନା । ଭୂମିଠାରୁ ଆରମ୍ଭ କରି ଦୁଇଟି ଦ୍ରାକ୍ଷାଲତା ପାତ୍ରଟିର ସମଗ୍ର ଦେହଟିକୁ କୋଳାଗ୍ରତ କରି କ୍ଷୀଣ ଗ୍ରୀବା ପାଖରେ ସମାପ୍ତ ହୋଇଛନ୍ତି । ଈଷଦ୍ ବାଦାମ ବର୍ଣ୍ଣର ପାତ୍ର ଉପରେ ଚିତ୍ରିତ ଘାସ-ନୀଳ ଆଇଭି ଲତା । ସୁନ୍ଦର - ଅତି ସୁନ୍ଦର ।

ମଦ୍ୟ ପାତ୍ରଟିକୁ ମନେ ମନେ ତାରିଫ କରୁ କରୁ ମୁଁ ମୁହୂର୍ତ୍ତେ ଅନ୍ୟମନସ୍କ ହୋଇ ପଡ଼ିଥିଲି । ଏକରକମ ଆର୍ତ୍ତ ଚିତ୍କାର କରି ଉଠିଲି - 'ସେ'ଇ ଯଥେଷ୍ଟ, ସେ'ଇ ଯଥେଷ୍ଟ ... ମୁଁ ପାନୀୟ ସଂକ୍ରାନ୍ତରେ ଏକରକମ ନଭିସ୍ ଲୀନ୍ ।'

ତେର ନମ୍ବର କ୍ୟାବିନ୍ ଯେପରି ସହସ୍ର ଝରଣାର କଳରବରେ ମୁଖରିତ ହୋଇ ଉଠିଲା । ଉଚ୍ଚହାସ୍ୟର ଆବେଗରେ ଲୀନ୍ ତା'ର ସୁକୁମାର ତନୁଟିକୁ ଥରାଇ କହିଲା, 'ଆପଣମାନେ ପ୍ରାୟ ଏକ ପ୍ରକାରର ... ସମସ୍ତେ ମଦ୍ୟଭୀରୁ । ସବୁବେଳେ ତ ଅତିମାତ୍ରାରେ ସଚେତନ ଥାଆନ୍ତି, ମୁହୂର୍ତ୍ତେ ଯଦି ଆପଣର ଚେତନା ପଥ ଭୁଲିଯାଏ କ୍ଷତି କଣ ?'

ଲୀନ୍ ଯେପରି କ୍ଷଣକରେ ଆପଣାର ହୋଇ ଉଠିଲା । ସୌନ୍ଦର୍ଯ୍ୟ, ଶିଷ୍ଟାଚାର, ପୁରାତନ ମଦ୍ୟ ଓ ମୃଣ୍ମୟ ଶିଳ୍ପ, ଏ ଚାରିଟି ପାଇଁ ଚୀନ ଦେଶର ବହୁଦିନର ପ୍ରତିଷ୍ଠିତ ଖ୍ୟାତି ଅଛି । ଏ ପ୍ରତ୍ୟେକଟି ଯେପରି ସେମାନଙ୍କର ରକ୍ତରେ । ପ୍ରତିଟି ସମଗ୍ର ଚୀନ ଜାତିର ଆଭିଜାତ୍ୟ ପ୍ରସୂତ । ବିଦେଶରେ ଏଇ ତେର ନମ୍ବର କ୍ୟାବିନରେ ମଧ ପ୍ରତିଟିର ଗନ୍ଧ ପାଇଲି, ସଂପୂର୍ଣ୍ଣ ଉପଭୋଗ କଲି । କିନ୍ତୁ ସବୁର ଉପରେ ଏଇ ଆଇଭି ଲତା ବେଷ୍ଟିତା ଚାଇନା ପାତ୍ରଟି ମତେ ମୁଗ୍ଧ କରି ଦେଇଥିଲା ।

ସେଇଦିନ ପାଇଁ ଲୀନ ଠାରୁ ବିଦାୟ ଆଣିଲି । ସେତେବେଳକୁ ଆମ୍ଭେମାନେ ଏକ ଅଜଣା ଦିଗ୍‌ବଳୟରେ, ଯେଉଁଠାରେ ପ୍ରଥମ ପରିଚୟର ଗମ୍ଭୀର ପାହାଡ଼ ଉପରେ ଘନିଷ୍ଠତାର ସୁନୀଳ ଆକାଶ ଆସନ ଜମାଇ ବସିଛି ।

ମନସୁଖ୍ ଆନମନା ହୋଇ ନୃତ୍ୟ ପ୍ରାଙ୍ଗଣକୁ ଚାହିଁ ରହିଥିଲା । ନେଲୀ ସେତେବେଳକୁ କ୍ଲାନ୍ତ ହୋଇ ଅପସରିଗଲାଣି ।

ପଶି ଆସୁ ଆସୁ ମନସୁର ଚେତାଇ ଦେଲା 'କିସ୍ତୀ' -

ଚେସବୋର୍ଡକୁ ଚାହିଁଲି । ଆଉ ବିଶେଷ ଉପାୟ ଥିଲା ପରି ମନେ ହେଉ ନାହିଁ । ମୋ'ର ପନ୍‌ର ତ୍ରିକୋଣ ଦୁର୍ଗର ପରିଖାକୁ ମନସୁର ତା'ର ନୌକା ନେଇ ଅତିକ୍ରମ କରି ଆସୁଛି ।

ମନ୍‌ସୁର କଥାର ତୀର ହାଣିଲା — 'ମୁଁ ଭାବିଥିଲି ଟୁରିଷ୍ଟ, ତମେ ଆଜି ଆଉ ଫେରିବ ନାହିଁ ତେର ନମ୍ବର କ୍ୟାବିନ୍‌ରୁ ।'

ଲୀନ୍ କଥା କହି ବସିଲା । ଶିଶୁର ଯେପରି ଆନନ୍ଦ ହୁଏ ଆକାଶରେ ସାତରଙ୍ଗର ଇନ୍ଦ୍ରଧନୁକୁ ଦେଖି, ଠିକ୍ ସେଇ ଉତ୍ସାହରେ କହି ବସିଲି ସେଇ ସୁନ୍ଦର ଆଇଭି ଲତା ବେଷ୍ଟିତା ଚାଇନା ପାତ୍ର କଥା । ମନ୍‌ସୁରର ଏପରି ତୀକ୍ଷ୍ଣ ଓ ଚତୁର ଆଖି କେବେ ଦେଖି ଆଗରୁ । ମୁଁ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲି ମନ୍‌ସୁରକୁ ।

ଦକ୍ଷ ଆଇନ ବ୍ୟବସାୟୀ ପରି ମତେ ପ୍ରଶ୍ନ କଲା ମନ୍‌ସୁର, 'ତମେ କଣ ଲୀନ୍ ପ୍ରତି ଖୁବ୍ ଆକୃଷ୍ଟ ହୋଇ ପଡ଼ିଛ ?' 'ନାଁ ଆଦୌ ନୁହେଁ ।' ଅକପଟରେ ସ୍ୱୀକାର କଲି । ତା' ପରେ ପରେ ମତେ ମନ୍‌ସୁର ଯାହା କହିଲା ମୁଁ ସେଥିରେ ଆଶ୍ଚର୍ଯ୍ୟ ହୋଇଗଲି । ମୋର କାଫେର ପ୍ରତିବେଶୀ ମନ୍‌ସୁରକୁ ମୁଁ ଯେପରି ଚିହ୍ନିଲି ପ୍ରଥମ କରି ।

ଆଖିର ଦୁଇ ପତାର ବ୍ୟବଧାନକୁ ସଂକୀର୍ଣ୍ଣ କରିଆଣି କହିଲା ମନ୍‌ସୁର 'ମୋର ସନ୍ଦେହ ହଉଛି କିନ୍ତୁ । ନାଁ, ଲୀନ୍ ଉପରେ ନୁହଁ - ସେଇ ଦ୍ରାକ୍ଷାଲତା ଉପରେ ?' ମୁଁ ଆହୁରି ଅନ୍ଧାର ଭିତରକୁ ଟାଣି ହୋଇଗଲି । 'ହୁଁ'। ମନସୁର ଗମ୍ଭୀର ହୋଇ ଉଠିଲା, 'ସୁନ୍ଦର ଆଇଭି ଲତା ଭିତରେ ଚୋରା ଅଫିମ ସ୍ମଗ୍ଲିଂ କରିବାରେ ଚିନାବାସୀଙ୍କର ଏକ ଅସାଧାରଣ ଦକ୍ଷତା ଅଛି । ହୁଏତ ଲୀନ୍ ଏଥିରେ ସଂପୃକ୍ତ । ହୁଏତ ନୁହଁ । କେବଳ ଗୋଟିଏ ନିର୍ଦ୍ଦୋଷ ନିରୀହ ଏଜେଣ୍ଟ୍ ।' ମୁଁ ପ୍ରତିବାଦ କଲି, 'ଏ ସନ୍ଦେହର କିଛି ଅର୍ଥ ନାହିଁ । ତମେ କଣ କହିପାରିବ ଆଇଭି ଲତା ତଳେ ନିଶ୍ଚିତ ଭାବରେ ଚୋରା ଅଫିମ ଅଛି ?'

ମନ୍‌ସୁର ହସିଲା ଓ କହିଲା 'ଚୋରା ଅଫିମର ସନ୍ଧାନପାଇଁ ମୁଁ ଗତ ଚାରିମାସ ହେଲା ଏଠି ରହୁଛି ଓ ଠିକ୍ ଏମିତି ଗୋଟିଏ ଲତା ବେଷ୍ଟିତା ଚାଇନା ଭେସ୍ ଖୋଜୁଛି । ମୋର ଅନୁମାନ ନିର୍ଭୁଲ - ତା ଛଡ଼ା ମୋର ବ୍ଲଡ୍ ହାଉଣ୍ଡ୍ ଆଉ କିଛି ସମୟ ପରେ ମତେ ନିର୍ଦ୍ଦିଷ୍ଟ ସମ୍ବାଦ ଆଣିଦେବ ।'

ମନ୍‌ସୁରର ପ୍ରଶାନ୍ତ ଆଖିରେ ଚଞ୍ଚଳତା ଦେଖାଦେଇଛି । କପୋତର ସନ୍ଧାନ ଯେପରି ପାଇଛି ବାଜପକ୍ଷୀ ।

ମନ୍‌ସୁର ନଗଦ ସ୍କଟ୍‌ଲାଣ୍ଡ୍ ୟାର୍ଡ୍ ଟ୍ରେନିଂପ୍ରାପ୍ତ ସିଃ ଆଇଃ ଡ଼ିଃ ବିଭାଗର ଡାଇରେକ୍‌ଟର । ମୁଁ ମନ୍‌ସୁରକୁ ତାର କର୍ତ୍ତବ୍ୟ କରିବାକୁ ଛାଡ଼ିଦେଇ ମୋର କୋଠରୀକୁ ଉଠିଆସିଲି । ବିଛଣାରେ ପଡ଼ି ପଡ଼ି ଭାବୁଛି ମନ୍‌ସୁର୍ କଥା ।

ସତରେ ସୁଜାତା, ମୋର ଦାବାଖେଳର ଦୋସ୍ତ ଏଇ କକ୍‌ଟେଲ୍ ପାୟୀ ମନ୍‌ସୁର ପ୍ରତି ମୁଁ ଅତ୍ୟନ୍ତ ଆକୃଷ୍ଟ ହୋଇ ପଡ଼ିଥିଲି । ମନ୍‌ସୁରର ଆଖିର ପ୍ରଶାନ୍ତି, ତାର ଟୋଷ୍ଟ, ତାର ବ୍ୟଙ୍ଗ, ସବୁ, ସବୁକିଛି ଏକାଧାରରେ ଅସାଧାରଣ - ତ୍ରିଭୁଜର ଚତୁର୍ଥ କୋଣ ପରି ।

କି ବା ଭୁଲ କରିଛି ମନ୍‌ସୁର । କିନ୍ତୁ କେଜାଣି କାହିଁକି ଏଇ ତୀକ୍ଷଣବୁଦ୍ଧି ସଂପନ୍ନ କର୍ମଦକ୍ଷ ନୂତନ ମନ୍‌ସୁର ମୋର ଅନ୍ତରର ସହାନୁଭୂତି ବୃତ୍ତ ବାହାରେ ଘୂରି ବୁଲୁଛି । ମନ୍‌ସୁରର ବ୍ଲଡ୍‌ହାଉଣ୍ଡ ହୁଏତ ଅଫିମର ଗନ୍ଧ ଖୋଜି ସେଇ ତେର ନମ୍ବର ବକ୍‌ସରେ ପହଞ୍ଚିବ - ହଏତ ଲୀନ୍ ଏଥିରେ ଜଡ଼ିତ - ହଏତ ମନ୍‌ସୁର୍‌ର ସନ୍ଦେହ ଯଥାର୍ଥ । ଏକ ଚମତ୍କାର ଡ଼ିଟେକ୍‌ଟିଭ ଉପନ୍ୟାସର ନାୟକ ହେବ ମନ୍‌ସୁର୍ ।

ମୁଁ ମନ୍‌ସୁର୍‌ର ଅସାଧାରଣ ଷଷ୍ଠ ପ୍ରବୃତ୍ତିକୁ ମୁକ୍ତ କଣ୍ଠରେ ପ୍ରଶଂସା କରୁଛି । କିନ୍ତୁ କାହିଁକି କେଜାଣି ଭଲ ପାଇପାରୁ ନାହିଁ । କ୍ଷମା କରିବ ସୁଜାତା । ଯେଉଁ ମନ୍‌ସୁର୍‌ର ପରିଚୟ ଦେବି ବୋଲି ଗତ ଚିଠିରେ ଏତେ ଆବେଗର ସହିତ ଲେଖିଥିଲି, ସେଇ ମୋର ପ୍ରିୟ କକ୍‌ଟେଲ୍ ପାୟୀ ବିଶ୍ୱପ୍ରେମୀ ମନ୍‌ସୁର୍ ମରିଗଲା କେଉଁ ମୁହୂର୍ତ୍ତ ତଳେ ।

ମୋର ଦୋସ୍ତର କବର ଉପରେ ମୁଁ ନିଜ ହାତରେ ରଜନୀଗନ୍ଧା ଲଗାଇ ଦଉଛି । କିନ୍ତୁ ଏଇ ନୂତନ ମନ୍‌ସୁର୍‌ର କବର ଉପରେ ରହିବ ଦୃପ୍ତ ବ୍ଲଡ୍‌ହାଉଣ୍ଡର ମାର୍ବଲ ପ୍ରତିମୂର୍ତ୍ତି ।

ଆଉ ସେ ତନ୍ୱୀ ଲୀନ୍ ? ଛାଡ଼ ସେ କଥା । ମୁଁ ଚିଠି ଆରମ୍ଭ କରିଥିଲି ମନ୍‌ସୁର୍‌ର ପରିଚୟ ଦବାକୁ, ସମାପ୍ତ କଲି କ୍ରାଇମ୍ ଉପର ଥ୍ରିଲ୍ ଦେଇ । ମୋର ଚିଠିର ଏ ଆକସ୍ମିକ ପଥ ପରିବର୍ତ୍ତନପାଇଁ କଣ ମୁଁ ଦାୟୀ ? ଆଜି ଏତିକିରେ ରହୁଛି ।

ହୁଏତ ତମେ ମୋର ଆଉ ଚିଠି କାଫେ ଡ଼ି ବଲ୍‌ଭେଡ଼ିର୍‌ରୁ ପାଇବ ନାହିଁ । ମୋର ଆନ୍ତରିକ ସ୍ନେହ ନେବ ।

ତମର ସ୍ନେହର

ମୁଁ

# ଷଷ୍ଠୀ

ରତ୍ନଚିରା ଅବବାହିକା
ଫେବୃଆରୀ ୧୨

ପ୍ରିୟତମା ସୁଜାତା,

ତମେ ରତ୍ନଚିରା ନଈ ଦେଖିଛ କେବେ ? ..... ଭାରୀ ଶୁଖିଲା ।

ରତ୍ନଚିରା ରତ୍ନଗର୍ଭା କି ନାଁ ମୁଁ ଜାଣେନା ..... କିନ୍ତୁ ଅନନ୍ତ ଯୌବନା । ମୋ'ର ଜୀବନର ଅନେକ ଅନେକ ଅଳସ ମୁହୂର୍ତ୍ତ କଟେଇଛି ଏଇ ନଈର ବାଲିରେ ଶୋଇ ଶୋଇ ।



ଏ ମୋ'ର ସହସ୍ର କଳ୍ପନାର ନଦୀ ।

ତମେ ଯଦି କେବେ କ୍ଳାନ୍ତ ହୋଇପଡ଼ ସୁ' - ଯଦି କେବେ ମୁକ୍ତି ଚାହଁ ପୃଥିବୀର ଅଯଥା କୋଳାହଳରୁ , ତାହାହେଲେ ଆସିବ ଏଇ ରତ୍ନଚିରା ନଈ କୂଳକୁ, ଭାରି ସୁନ୍ଦର ଏଇ ପରିବେଶ, ଏଠି ଯେପରି ମନରେ ସ୍ୱପ୍ନ ଜନ୍ମ ନିଏ ।

ରତ୍ନଚିରାର ମୁକୁଳା ଛାତିରେ ଟେନାଏ ଆକାଶ ଦେଖାଯାଉଛି । କିନ୍ତୁ ଏଇ ଅନ୍ତସତ୍ତ୍ୱା ରତ୍ନଚିରା କଣ ଜାଣେ ସେ' ତା'ର ଗର୍ଭରେ ଧରି ରଖିଛି ଏହି ବିପୁଳ ଆକାଶଟାକୁ ?

ଆଜିର ତିଥି କ'ଣ ? ମନେ ନାହିଁ ମୋ'ର । ଆକାଶରେ ଚନ୍ଦ୍ର ନାହିଁ । କିନ୍ତୁ କୃଷ୍ଣନୀଳ ଆକାଶର ପ୍ରତି ଲୋମକୂପରେ ଯେପରି କିଏ ବିଞ୍ଚିଦେଇ ଯାଇଛି ଅସଂଖ୍ୟ ନକ୍ଷତ୍ର । କିନ୍ତୁ ହାୟ ! ଆକାଶର ମାଟିରେ ଯଦି ଏଇ ତାରା ଶସ୍ୟ ଗଛ ହେଉଥାଆନ୍ତା ..... ତାହାଲେ ଏଇ ତାରା ଗଛରୁ ପ୍ରତିଦିନ କେତେ ତାରା ଖସିପଡ଼ନ୍ତା ଆମର ଏଇ ପୃଥିବୀ ଉପରେ । ହେଲା ଅବା ମୁହୂର୍ତ୍ତକ ପାଇଁ ଭୁଲ ହୋଇଯାଆନ୍ତା ନିଉଟନ୍‌ଙ୍କର ମାଧାକର୍ଷଣ ତଥ୍ୟ, କିନ୍ତୁ

ତା'ର ପରିବର୍ତ୍ତରେ କି ସୁନ୍ଦର ତାରା ସବୁ ଆମେ ପାଆନ୍ତେ ! ଆମେ — ତମେ, ମୁଁ ..... ଅନ୍ୟମାନେ ମଧ୍ୟ ପାଆନ୍ତୁ କିଛି କିଛି ... ଯେତେବେଳେ ଏତେ ତାରା !

ସେ, ମୋ'ର ନିର୍ବୋଧ ଶୈଶବର କଥା । ଯେତେବେଳେ ମୋର ପ୍ରଥମ କରି ପରିଚୟ ହୁଏ ଆକାଶର ତାରା ସହିତ । ମତେ ଜଣେ କାଖରେ ଧରି ବୁଲିଥିଲେ ଠିକ୍ ଏମିତି ଗୋଟିଏ ତାରକିତ ଆକାଶ ତଳେ - ସ୍ନେହାବିଷ୍ଟ ତର୍ଜନୀ ଦେଖେଇ ଚିହ୍ନେଇ ଦେଇଥିଲେ ..... ହେଇ .....ସେଇଠି .....ଧ୍ରୁବତାରା । ପିଲାଦିନେ ଖୁବ୍ ବୁଦ୍ଧିମାନ ଥିଲି ବୋଲି କେହି କେହି କହନ୍ତି । ଖୁବ୍ ଶୀଘ୍ର ମନେ ରଖିଥିଲି - ଧ୍ରୁବତାରା । ଆଉ ଠିକ୍ ତା' ପରେ ପରେ ସେଇ କ୍ଷୁଦ୍ର ଉପଖ୍ୟାନ ..... ।

ପୁରାକାଳରେ କୌଣସି ଏକ ରାଜ୍ୟରେ ଉତ୍ତାନପାଦ ନାମକ ଜଣେ ରାଜା ବାସ କରୁଥିଲେ ..... ଧ୍ରୁବର ଅଟଳ ତପସ୍ୟାରେ ପ୍ରୀତ ହୋଇ ସୃଷ୍ଟିକର୍ତ୍ତା ତାକୁ ପଚାରିଲେ, 'ମୁଁ ତମର କଠୋର ତପସ୍ୟାରେ ପ୍ରୀତ ହୋଇଅଛି । ଯାହାଇଚ୍ଛା ବର ମାଗ' । ଶିଶୁ ଧ୍ରୁବ କେତେ ଉଦାର ! ସେ ମାଗିଥିଲେ ବୋଧେ ସମଗ୍ର ପୃଥିବୀଟା ତା'ର ହୋଇ ପାରି ଥାଆନ୍ତା । କିନ୍ତୁ ସେ' କିଛି ମାଗିଲା ନାହିଁ ..... 'ମତେ ଆକାଶରେ ଗୋଟିଏ ତାରା କରିଦିଅ ପ୍ରଭୁ ।' ପ୍ରଭୁ କହିଲେ, 'ତଥାସ୍ତୁ ।'

ଏ କାହାଣୀ ମୋ'ର କୌତୂହଳୀ ଶୈଶବକୁ ବିସ୍ମିତ କରିଦେଇଥିଲା । ଅନେକ ବିସ୍ମୟ !! କିନ୍ତୁ ହାୟ ତମେ ହତଭାଗ୍ୟ ଭାରତୀୟ ଶିଶୁ । ତମର ଶୈଶବରେ କେତେ ଧ୍ରୁବ, ପ୍ରହ୍ଲାଦର ଆଦର୍ଶ ଆଉ ନୀତିର ରଙ୍ଗ ସେଇ ଅଙ୍କା ତମର ଆଜିର ଏଇ ମନରେ ମାନଚିତ୍ର । ଆଉ ତମେ ରଦ୍ଦିଚିରା ନଇ ବାଲିରେ ଶୋଇ ଶୋଇ ତାରାଗଣର କଳ୍ପନା କରୁଛ ?

ଠିକ୍ ସେଇଦିନଠାରୁ ମୁଁ ଅନେକ ସନ୍ଧ୍ୟାରେ ଏଇ ଧ୍ରୁବତାରାକୁ ଲକ୍ଷ୍ୟ କରେ । ଆହୁରି ଆଶ୍ଚର୍ଯ୍ୟ ..... ପ୍ରତି ଦିନ ଚକ୍ରବାଳରେ ଠିକ୍ ସେଇ ବିନ୍ଦୁରେ ଉଠିଆସେ ଧ୍ରୁବତାରା । ସ୍ୱର୍ଗର ସେଇ ଜାଗାଟା ଯେମିତି ଧ୍ରୁବ ପାଇଁ ନିର୍ଦ୍ଧାରିତ କରି ଦିଆଯାଇଛି ଚିରଦିନ ପାଇଁ । ଧ୍ରୁବ ପରି ଅଟଳ ତପସ୍ୟା ଅସୀମ କୃଚ୍ଛ୍ର ସାଧନା କଲେ ତମେ ମଧ୍ୟ ଅମର ହୋଇପାରିବ ।

ତା'ର କିଛିଦିନ ପରେ । ଭୂଗୋଳ ବହି କୁହେ ସମୁଦ୍ରରେ ଦିଗହରା ନାବିକ ଏଇ ଧ୍ରୁବତାରାକୁ ଦେଖି ତା'ର ଜାହାଜର ଗତି ନିୟନ୍ତ୍ରଣ କରେ । ବିଜ୍ଞାନ କୁହେ ଧ୍ରୁବତାରା ଆମର ଏଇ ପୃଥିବୀ ପରି ଗୋଟିଏ ଗ୍ରହ ବା ଉପଗ୍ରହ । ହୁଏତ ସେଠି ମାଟି ଅଛି, ପାଣି, ପବନ ଅଛି । ଲୁହା ଆଉ ଅନେକ ଧାତୁ ଥାଇ ପାରେ । ଅନେକ ବଡ଼, ଖୁବ ଓଜନ ।

ଖାଲି ଧ୍ରୁବତାରା ନୁହଁ, ଆହୁରି ଅନେକ ଅନେକ ତାରା, ଅନେକ ଗ୍ରହ, ସପ୍ତର୍ଷି ମଣ୍ଡଳରେ ପ୍ରଶ୍ନବାଚକ, ଡ଼ଗ୍‌ଷ୍ଟାର୍, ଦି ବିଅର, ଅରୁନ୍ଧତୀ, କୃତ୍ତିକା, ଏମିତି ଅନେକ ।

କିଛି ଜ୍ୟାମିତି ମଧ ଶିଖିଥିଲି । ସପ୍ତର୍ଷିର ପ୍ରଥମ ଦୁଇତାରାକୁ ଯୋଗକରି, ସେଇ ସରଳରେଖାକୁ ବଢ଼ାଇଲେ ..... ଦୂରକୁ ..... ଅନେକ ଦୂରକୁ ତାହା ଧ୍ରୁବତାରାକୁ ଯାଇଁ ଆଘାତ କରେ । ସ୍କୁଲ ଛାତ୍ର ଉପପାଦ୍ୟର ଚିତ୍ରାଙ୍କନରେ ରେଖା ବଢ଼ାଇଲା ପରି ଅନେକ ଥର ଏଇ ସପ୍ତର୍ଷିର ସରଳରେଖାକୁ ଆଖିର ଦୂରବୀକ୍ଷଣରେ ବଢ଼ାଇଛି ଶୂନ୍ୟ ଆକାଶରେ ।

ଏ ମୋର ଆଜିର କଥା । କିନ୍ତୁ ମୋର ମନେ ମନେ ମୁଁ କେତେଥର ନିମନ୍ତ୍ରଣ କରିଛି ମୋ'ର ସେଇ ନିର୍ବୋଧ କୌତୂହଳୀ ଶୈଶବକୁ । ଆଜି ଯଦି ଆଉଥରେ ଫେରିଆସନ୍ତା ମୋ'ର ଗତାୟୁ ଶୈଶବ । ଦୁଇଟି କୌତୂହଳୀ ଆଖି ନେଇ କି ଅପାର ବିସ୍ମୟରେ ମୁଁ ଚାହିଁ ରହନ୍ତି ଆକାଶକୁ ! ତମେ ବି ଠିକ୍ ସେଇ ଅନୁପାତରେ ଆହୁରି ଛୋଟ ହୋଇଯାଆନ୍ତ ।

ଦୁଇଟି ଶିଶୁ ହାତ ଛନ୍ଦି ଆମେ ବୁଲୁଥାନ୍ତେ ଏଇ ତାରା ବିଞ୍ଚା ଆକାଶ ତଳେ । ଖୁବ୍ ଜଣେ ଅଭିଜ୍ଞ ଲୋକର କଣ୍ଠ ନେଇ ମୁଁ ତମକୁ ଗର୍ବରେ ଆକାଶର ତାରା ଚିହ୍ନେଇ ଦଉଥାଆନ୍ତି ।

ମୁଁ ଆମ ଦୁହିଁଙ୍କର ଶୈଶବ ଯେପରି ଆଖି ଆଗରେ ଦେଖି ପାରୁଛି ସୁଜାତା ! କି କରୁଣ ସତେ ସେମାନଙ୍କର ନିର୍ବୋଧତା । କିନ୍ତୁ କି ଆନନ୍ଦ । କି ଗୀତ ଗାଉଛନ୍ତି ସେମାନେ ?

Twinkle Twinkle little star
How I wonder what you are
Up above the world so high
Like a diamond in the sky.

କିନ୍ତୁ ସୁଜାତା, ତମେ ଯଦି ହଠାତ୍ ଆକାଶର ତାରା ପାଇଁ ଜିଦ୍ ଧରିବସନ୍ତ ? ଯଦି ତମେ ଅଭିମାନରେ ମତେ କଥା ନ କହନ୍ତ ? ବଡ଼ ମଜାର କଥା ହୁଅନ୍ତା କିନ୍ତୁ । ଆହା । ଶିଶୁ ପ୍ରିୟାର ଅଭିମାନରେ ଏକାଥରକେ ହତୋତ୍ସାହ ହୋଇ ମଉଳି ପଡନ୍ତି ମୁଁ । କପାଳରେ କରାଘାତ କରି କେତେ ନିନ୍ଦା ନକରନ୍ତି ନିଜକୁ । କାହିଁକି ମୁଁ ନ ହେଲି ସବ୍ୟସାଚୀ ? ଗାଣ୍ଡିବର ଗୋଟାଏ ଟଙ୍କାରରେ ମୋର ପ୍ରିୟାର ପାଦତଳେ ଲୋଟେଇ ଦିଅନ୍ତି ଅସୁମାରୀ ତାରା । ଭାରି ସୁନ୍ଦର ସତେ ଶୈଶବର ଯୌବନର ଏଇ ମିଛ ଅଭିନୟ । ଆଜି ଠିକ୍ ମନେନାହିଁ, ଯଯାତି ସେଦିନ ନିଜ ପୁତ୍ର ପାଖରେ ନତଜାନୁ ହୋଇ ଭିକ୍ଷା କରିଥିଲେ ତା'ର ଯୌବନ । ମୁଁ କିନ୍ତୁ କହିଥା'ନ୍ତି 'ମତେ ଶୈଶବ ଦିଅ - ମତେ ଚିର ଶୈଶବ ଦିଅ ।'

ଆଜି ମୁଁ ଶୈଶବକୁ ଅତିକ୍ରମ କରି ଆସିଛି । ଉଚ୍ଛୃଙ୍ଖଳ ଯୌବନ ଭିତରେ ଥାଇ ମଧ ମୁଁ ଆଜି ଅଭିଜ୍ଞ, ମୁଁ ଆଜି ସ୍ଥିତଧୀ । ଆଜି ମୁଁ ଜାଣୁଛି ତାରାଗଛ ହୁଏନାହିଁ । ମୁଁ ଜାଣେ ମୁଁ ସବ୍ୟସାଚୀ ନୁହେଁ । କିନ୍ତୁ ତଥାପି ସୁଜାତା । କଣ ଶେଷ ଅଛି ସେହି ସ୍ୱପ୍ନର ? ସନ୍ଧ୍ୟା

ଆକାଶରେ ତାରା ଶସ୍ୟ ଫଳବତୀ ହୁଏନାହିଁ । କିନ୍ତୁ ଉର୍ବର ମନର ମାଟିରେ ସ୍ୱପ୍ନ ଗଛ ହୁଏ । ମନର ଦେହେ ଦେହେ ସ୍ୱପ୍ନର ଚେର ମାଡ଼ିଯାଏ ଶକ୍ତ ହୋଇ । ସ୍ୱପ୍ନର ଅସଂଖ୍ୟ ଫୁଲ ଫୁଟେ । ଚୈତନ୍ୟର ଲକ୍ଷ ପ୍ରହରୀକୁ ଫାଙ୍କି ଦେଇ ମନର ଲୁବ୍ଧ ଭ୍ରମର ମହୁ ପିଏ ।

ଇସ୍ ! ଆକାଶର ଶୂନ୍ୟକୁ ଦୁଇଭାଗ କରି ତୀର ପରି ପହଁରି ଚାଲିଗଲା ଗୋଟିଏ ଉଜ୍ୱଳ ନକ୍ଷତ୍ର । କଣ ସମାପ୍ତ ହୋଇଗଲା ଗୋଟାଏଁ ନକ୍ଷତ୍ରର ଜୀବନ କାହାଣୀ ? କିନ୍ତୁ କେଉଁଠି ପଡ଼ିଲା ଯାଇ ଏଇ ଉଜ୍ଜଳ ନକ୍ଷତ୍ରଟା ?

କୁପେନ୍‌ହେଗେନ୍ ? ଭ୍ଲାଡ଼ିଭାଷ୍ଟକ୍ ? ହନଲୁଲୁ ? ହୁଏତ ଯା' ବି ହୋଇପାରେ ସେ' ଯାଇ ପଡ଼ିଲା ପ୍ରଶାନ୍ତ ମହାସାଗରର ଗୋଟାଏ ନାଁ ନଜଣା ଅନାବିଷ୍କୃତ ଦ୍ୱୀପରେ । ଆଦୌ ନ ପଡ଼ି ପାରିଥାଏ ଆମର ଏଇ ପୃଥିବୀଉପରେ; ହୁଏତ ସେ ଆହୁଲା କାଟି ଚାଲିଗଲା ଆଉ ଗୋଟାଏ ଗ୍ରହକୁ ।

ଦିନେ ଯଦି ଏମିତି ଅକାରଣରେ ବୁଲୁ ବୁଲୁ ଅକସ୍ମାତ ମୋ'ର ଟପ୍ ହ୍ୟାଟ୍ ଭିତରେ ଆସି ଧରା ଦିଅନ୍ତା ଏମିତି ଗୋଟାଏ କକ୍ଷଚ୍ୟୁତ ନକ୍ଷତ୍ର, ଚମତ୍କାର ହୁଅନ୍ତା ସତେ । 'ଇଉରେକ୍‌କା,' 'ଇଉରେକ୍‌କା'; ଚିତ୍କାର କରି ଦଉଡ଼ନ୍ତି ତମପାଖକୁ । ତାରା ପାଇଁ ତମର ଶୈଶବର ସେଇ ଅବୁଝା ଅଭିମାନ ଅବା ଭାଙ୍ଗି ପାରନ୍ତି ।

କେମିତି ହୋଇଥାନ୍ତା ତାରାଟା ? ଖୁବ୍ ଉଜ୍ୱଳ ଆଉ ତରଳ ବୋଧହୁଏ ? କେଉଁଠି ରଖନ୍ତେ ତା'କୁ ? ଅତି ଗୋପନରେ ରଖିବାକୁ ହେବ ଯେମିତି ଶଙ୍ଖଚୂଡ଼ଗୃହୀଣୀ ରଖେ ତା'ର ମଥାର ମଣିକୁ । ଶୁଣିଛ କେବେ କେହି ପୃଥିବୀର ମାନବ ପାଇଛି ଆକାଶର ନକ୍ଷତ୍ର ?

କିନ୍ତୁ ସବୁଠାରୁ ଭଲ ହୁଅନ୍ତା ଯଦି ତାଙ୍କୁ ଅବହେଳାରେ ଫୋପାଡ଼ି ଦିଅନ୍ତେ ଫେନୋଚ୍ଛଳ ମହୋଦଧି ଭିତରକୁ । ଠିକ୍ ତାରି ପରେ ପରେ ବୋଧହୁଏ ସେଇ ତାରାଟା ଧୀରେ ଧୀରେ ଉଠିଆସନ୍ତା ଆକାଶରେ ଚକ୍ରବାଳ ଡେ଼ଇଁ । ଅପୂର୍ବ ସନ୍ତୋଷ ଆସନ୍ତା ମନରେ । ଯେମିତି ଆମର ଅଜାଣତରେ ଆମେ ସଞ୍ଜୀବନୀ ମନ୍ତ୍ର ଫୁଙ୍କି ଦେଲେ ଗୋଟାଏ ଅଭିଶପ୍ତ କକ୍ଷଚ୍ୟୁତ ନକ୍ଷତ୍ର ଦେହରେ ।

ବେଶ୍ ରାତି ହେଲାଣି ।

ଆକାଶରେ ତାରାଗୁଡ଼ାକ ମତେ ମିଟ୍ ମିଟ୍ କରି ଚାହିଁଛନ୍ତି । ସପ୍ତର୍ଷିର ସାତଟା ଯାକ ଉଜ୍ୱଳ ତାରା ଆଖି ବିସ୍ତାରିତ କରି ଚାହିଁ ରହିଛନ୍ତି ଯେପରି । ସପ୍ତର୍ଷିର ପ୍ରତ୍ୟେକଟି ତାରା ଯେପରି ଗୋଟିଏ ଗୋଟିଏ ନୂତନ ରହସ୍ୟ । ଦେଖିଛ ତମେ ସୁଜାତା ସପ୍ତର୍ଷିର ସିଂହାସନ ? ପୃଥିବୀର ସମସ୍ତ ଦାର୍ଶନିକ, ବୈଜ୍ଞାନିକମାନଙ୍କର ସମଗ୍ର କୌତୂହଳୀ ମନର ନିଯୁତ ପ୍ରଶ୍ନ ଆଉ ଅକଳନ ବିସ୍ମୟ ଯେପରି ଏକତ୍ର ଠୁଳ ହୋଇଯାଇ, ଏକ ବିରାଟ ପ୍ରଶ୍ନ ବାଚକରେ ଚାହିଁ ରହିଛି ଏଇ ବିଜ୍ଞାନ-ଉନ୍ନତ ମାନବ କୀଟ ଆଡ଼େ । ଆଜି ନୁହେଁ — ଯୁଗ ଯୁଗ ଧରି ଏମାନେ ଏମିତି ଚାହିଁ ରହିଛନ୍ତି ପୃଥିବୀକୁ । କିଏ ଜବାବ ଦବ ଏଇ ଚିରନ୍ତନ

ପ୍ରଶ୍ନବାଚକର ? କିଏ କହିବ ବିଜ୍ଞାନ ଦେଇ ସେ' ବିଶ୍ୱର ସମସ୍ତ ରହସ୍ୟ ଉଦ୍‌ଘାଟନ କରିପାରିଛି ବୋଲି ? ମନୁଷ୍ୟ କେତେ କ୍ଷୁଦ୍ର ! କେଡ଼େ ଅସହାୟ ! ଅଥଚ ତା'ର ଆସ୍ପାଳନ ଗଗନଚୁମ୍ବୀ ..... ମନୁଷ୍ୟକୁ କ୍ଷମା କର !

ଓମାର ଥିଲେ ସେ ଯୁଗର ପ୍ରସିଦ୍ଧ ଗାଣିତିକ ଆଉ ଜ୍ୟୋତିଷ । ପାରସ୍ୟ ଆକାଶରେ ଏଇ ଅନିବାର୍ଯ୍ୟ ସପ୍ତର୍ଷିର ଇଙ୍ଗିତକୁ ଲକ୍ଷ୍ୟ କରି ବୋଧହୁଏ ଲେଖିଥିଲେ ସେ'-

There was a door to which I found no Key
There was a veil past which I could not see.

ମନୁଷ୍ୟର ଅକ୍ଷମତା ନେଇ ଏ ସ୍ପଷ୍ଟବାଦୀତା ନିଷ୍ଠୁର ହେଲେ ମଧ ସତ୍ୟ ।

ଏ ମୁହୂର୍ତ୍ତରେ ତମେ କଣ ଠିକ୍ ମୋ'ରି ପରି ଆକାଶକୁ ଚାହିଁ ରହିଛି ଅକାରଣ ? ତମେ, ମୁଁ ଓ ଏଇ ତାରା ଗୋଟିଏ କାଞ୍ଚନିକ ତ୍ରିଭୁଜର ତିନୋଟି ବିନ୍ଦୁରେ ଆମେ । ରହିଚିରାଠାରୁ ତମେ ଅନେକ ଦୂରରେ ଆଜି ଅନେକ ଦୂରରେ....

ବହୁଦିନ ହୋଇଗଲା ସୁଜାତା ମୁଁ ତମର ଅପେକ୍ଷା କରୁଛି । ତମେ ଆସ । କବିର ପ୍ରଥମ କବିତା ପରି ସହଜ ଓ ସରଳ ଭାବରେ ସେଦିନ ମୁଁ ତମକୁ ଆବିଷ୍କାର କରିଥିଲି । କି ଗୀତ ଗାଇଥିଲ ତମେ ସେ ଦିନ ? ମୋର ମନେ ନାହିଁ । କିନ୍ତୁ ଆଜି ବି ଯେମିତି ମୁଁ ସେଇ ଗୀତ ଶୁଣୁ ଶୁଣୁ ଶୋଇ ପଡ଼ିଛି । ଯୌବନ ମୋ'ର ଶୋଇ ରହିଛି ଅଜଗର ପରି ଅତି ଭୋଜନର ତନ୍ଦ୍ରାରେ ଅଚେତନ ହୋଇ । ଯୌବନ ମୋ'ର ତନ୍ଦ୍ରାଚ୍ଛନ୍ନ । ତମର ରୂପାକାଠିର ଯାଦୁରେ ଅନେକଦିନ ଶୋଇପଡ଼ିଲି ମୁଁ । ସୁନାକାଠି ନେଇ କେବେ ତମେ ଆସିବ ସୁଜାତା ? ତମେ ଆସ । ମୋ'ର ଏ ଘୁମନ୍ତ ଯୌବନକୁ ଉଜ୍ଜୀବିତ କର ।

ତମେ ବହୁତ ଦୂରରେ । ଏ ଜୀବନରେ ହୁଏତ ତ୍ରିଭୁଜର ଏଇ ଦୀର୍ଘ ଭୂମିକୁ ଅତିକ୍ରମ କରିପାରିବ ନାହିଁ ତମେ । କିନ୍ତୁ ମନେରଖ ତମ ଘର ପାଖରେ ସେଇ ତାଳ ଗଛର ଦୁଇ ବାହୁଙ୍ଗା ଭିତରେ ଯେଉଁ ଚେନାଏ ନୀଳ ଆକାଶ ଦେଖାଯାଏ, ସେଇଠି — ଠିକ ସେଇଠି, ମୁଁ ତାରା ହୋଇ ଫୁଟିବି, ତମେ ବି ସେଇଠି ଫୁଟିବ ମୋ'ରି ପାଖେ ପାଖେ । ଭୟ ନାହିଁ ସୁଜାତା ! ଏ ପୃଥିବୀର ଲୋକେ କେହି ଚିହ୍ନିପାରିବେ ନାହିଁ ଆମକୁ । ଆମେ ସେମାନଙ୍କୁ ପୁରାପୁରି ଠକିଦେବା ।

ସ୍ ସ୍ ସ୍ ... ଚୁପ୍ କର ।

ଏ କଣ ! ହଠାତ୍ ଯେପରି ନିସ୍ତବ୍‌ଧ ହୋଇଗଲା ଚତୁର୍ଦ୍ଦିଗ । କଳକଣ୍ଠା ରହିଚିରା ବି ମୌନ ହୋଇ ଯାଇଛି । ତା'ର ପାଦର ନୂପୁର ବାଲିରେ ଲୁଚେଇ ଦେଇ ଯେପରି ନିଃଶବ୍ଦରେ ଗୋପନ ଅଭିସାର ଆରମ୍ଭ କରିଛି ରହିଚିରା, ଏଇ ତାରକିତ ଆକାଶ ତଳେ । ସାର୍ଥକ ହେଉ ତମର ଅଭିସାର, ନିବିଡ଼ତର ହେଉ ତମର ବାହୁ ବନ୍ଧନ ।

ଅସମ୍ଭବ ନିସ୍ତବ୍ଧତା । କିନ୍ତୁ ଏ କି ଶବ୍ଦ ଶୁଣାଯାଉଛି ? ଗଛର ଲତା ପର୍ଯ୍ୟନ୍ତ ଯେପରି ନିଶ୍ଚଳ ହୋଇଯାଇ ଅକଳନ ପତ୍ର କାନପାତି ଶୁଣୁଛନ୍ତି ଏଇ ଶବ୍ଦକୁ । ଦୂରରେ... ଖୁବ୍ ଦୂରରେ ସତେ ଯେମିତି ସହସ୍ର କମଳଲୋଭୀ ଭ୍ରମର ଏକ ସଙ୍ଗରେ ଐକ୍ୟତାନରେ ଗୁଞ୍ଜନ କରି ଉଠୁଛନ୍ତି । ଶୁଣୁଛ ତମେ ସୁଜାତା ? ଶୁଣୁଛ ? ମହାଶୂନ୍ୟ ଭିତରେ ବସୁନ୍ଧରା ତା'ର କକ୍ଷ ଚାରିପଟେ ବୁଲୁଛି । ହଁ ଠିକ୍ ବୁଲୁଛି । ବସୁନ୍ଧରା — ଆଉ ତା' ସାଙ୍ଗେ ସାଙ୍ଗେ ମଧ ବୁଲିବାକୁ ଆରମ୍ଭ କରିଛନ୍ତି ଆକାଶର ସଂଖ୍ୟାହୀନ ଜ୍ୟୋତିଷ୍କ । ଯେପରି ଅନନ୍ତ ଶେଷହୀନ ଶୂନ୍ୟତା ଭିତରେ ଏଇ ସ୍ୱପ୍ନ-ମୂର୍ଚ୍ଛିତା ବିଶ୍ୱବ୍ରହ୍ମାଣ୍ଡ ପାର୍ଶ୍ୱପରିବର୍ତ୍ତନ କରୁଛି । ଏ ବିଶ୍ୱର ନିୟମିତ ସଙ୍ଗୀତ । ଆଶ୍ଚର୍ଯ୍ୟ ! କିଏ କଥା କହୁଛି ଏବେବେଳେ ? ବିଶ୍ୱର ସଙ୍ଗୀତ ସହିତ ତାଳ ଦେଇ କିଏ ଯେପରି ଫିସ୍ ଫିସ୍ କରି କହୁଛି, 'ହେ ବିହଙ୍ଗ ! ଏ ଅସମୟରେ ତମର ପକ୍ଷ ମୁଦ୍ରିତ କର ନାହିଁ ।'

ତାରାରେ ତାରାରେ ପ୍ରତିଧ୍ୱନିତ ହେଉଛି ରବୀନ୍ଦ୍ରଙ୍କର ଏଇ ଅତୃପ୍ତ ଆତ୍ମାର ବାଣୀ ।

ମୁଁ କବିତା ଲେଖି ପାରେନାହିଁ । ପାରୁଥିଲେ ଏଇ ତାରା ସିଞ୍ଚିତ ଆକାଶ ତଳେ ମୁଁ ମୋର କ୍ଲାନ୍ତ ପ୍ରାଣ ବିହଙ୍ଗମକୁ କହିଥା'ନ୍ତି, 'ହେ ମୋର ଅତ୍ୟାଚାରିତା ପ୍ରାଣ ବିହଙ୍ଗମ ! ପକ୍ଷ ମୁଦ୍ରିତ କର ତମେ ।'

ସୁନ୍ଦର ହୁଅନ୍ତା ଏଇ ମୃତ୍ୟୁ ।

କଣ କରୁଛ ତମେ ଆଜିର ଏଇ ରହସ୍ୟମୟୀ ରାତ୍ରିରେ ? ତମେ ବୋଧହୁଏ ଶୋଇଚ ଗଭୀର ନିଦରେ ଅଚେତନ ହୋଇ । ତାରାର ଉଜ୍ଜ୍ୱଳ ସ୍ୱପ୍ନରେ ସାର୍ଥକ ହେଉ ତମର ଏଇ ନିଦ୍ରା ।

ଆମେ ଶୋଇବାକୁ ଯାଉଛୁଁ । ମୁଁ ଆଉ ମୋ'ର ଏଇ ସହସ୍ର ସ୍ୱପ୍ନର ନଈ ରହିଚିରା । ଆଉଥରେ ମନେପକେଇ ଦଉଚି । ସେ'ଇ ଚଳ ବାହୁଙ୍ଗୀର ଫାଙ୍କରେ ଯେଉଁଠି ଚେନାଏ ନୀଳ ଆକାଶ ଦେଖାଯାଏ ସେଇଠି — ଠିକ୍ ସେଇଠି । ମୁଁ ଫୁଟିବି ତାରା ହେଇ, ଆଉ ତମେ ବି' ।

ତମର କ୍ଷୁଦ୍ର ପରିମିତ ଉଜ୍ଜଳ କପାଳ ଉପରେ କୁଙ୍କୁମର ବିନ୍ଦୁ ଏତେ ସୁନ୍ଦର ଦେଖାଯାଏ !

ମୋର ଲିପିରଚନା ଏଇଠାରେ ଶେଷକରିବା ଉଚିତ୍ । ମୋ'ର ଆନ୍ତରିକ ସ୍ନେହ ନିଅ !

ତମର
ମୁଁ

# ସପ୍ତମୀ

ମୋ' ଘର
ପୌଷ ପଞ୍ଚମୀ

ଅବିସ୍ମରଣୀୟା !

ବହୁଦିନ ପରେ ଆଜି ଅବସର ପାଇଛି । ଅନେକ ଅବସର । କିନ୍ତୁ ଏହି ଅବସାଦ କ୍ଳାନ୍ତ ମନ ନେଇ କଣ ଚିଠି ଲେଖିବି ତମ ପାଖକୁ ? ମୋର କଳ୍ପନାର ସୁବର୍ଣ୍ଣତଟରେ ଆଜି ବିଷାଦର ନିର୍ଲିପ୍ତ ପ୍ରଶାନ୍ତି । ନାଁ, ମୁଁ ଆଜି ଚିଠି ଲେଖିବି ନାହିଁ ତମ ପାଖକୁ ।



ତମର ମନେ ଥିବ ଦିନେ ତମକୁ ମୁଁ କୃଷ୍ଣମୟୀର ଉପାଖ୍ୟାନ ଶୁଣାଉଥିଲି । କୃଷ୍ଣମୟୀର ହରିଣୀ-ଦୀର୍ଘ ଆକ୍ଷି ଉପରେ ଆକ୍ଷି ରଖି ମୁଁ ମୁଗ୍ଧ ହୋଇଥିଲି ଦିନେ । ଆକ୍ଷି ତ ନୁହଁ, ମୂର୍ତ୍ତମତୀ କାମନା । ଆଜିର ଏଇ ଅବସାଦ ଶିଥିଳ ଲଗ୍ନରେ ମୁଁ ତମକୁ ଉପହାର ଦଉଛି କୃଷ୍ଣମୟୀର ଚିଠି । ଶିଳ୍ପୀର ନିପୁଣ ହାତ ପାଣି, ପାତ୍ର ଓ ଯଷ୍ଟି ପରି ଅତି ସାଧାରଣ ଉପକରଣରୁ ଜଳତରଙ୍ଗର ମୂର୍ଚ୍ଛନା ଓଟାରି ଆଣେ । ଠିକ୍ ସେହିପରି କାମନା ଦୀପ୍ତ ହାତରେ ଶବ୍ଦରେ ଶବ୍ଦ ଯୋଜନା କରି ଲିପି-ସନ୍ଧାନ କଲେ ଲକ୍ଷ ଯୋଜନ ଦୂରରେ ଅତନୁର ତାନ୍‌ପୁରା ବାଜି ଉଠେ ।

କୃଷ୍ଣମୟୀର ଏ ଚିଠିରେ ତମର ମାନସ ସରୋବରରେ କାମନାର ସହସ୍ରଦଳ ଫୁଟି ଉଠୁ, ତମେ ହୁଅ କାମିନୀ ।

କୃଷ୍ଣମୟୀ ଲେଖିଛି,

ପ୍ରିୟ ବନ୍ଧୁ,

ଆପଣଙ୍କ ପାଖକୁ ଆଜି ପୁଣି ଥରେ ଚିଠି ଲେଖୁଛି । ଚମତ୍କାର ପ୍ଲି ଅଛି ସେଥିପାଇଁ । ଆଜି ଦିନଟା ଭାରୀ ଚମତ୍କାର... ଏମିତିକା ଦିନରେ ଚିଠି ଲେଖିବାକୁ ମନ ହୁଏ ।

ଉପରେ ଶରତ୍‌ର ପରିଚ୍ଛନ୍ନ ଆକାଶ । ଆଜି ଯଦି ଆପଣ ଥାଆନ୍ତେ ଏଠି, ତାହାହେଲେ ପୂର୍ବ-ପଟର ବାରଣ୍ଡାରେ ବସି ସାମାନ୍ୟ ଆଡ୍‌ଡ଼ା ଦିଅନ୍ତେ ବା' ନଈବାଲିରେ ଚିତ୍ ହୋଇ ଶୋଇ ରହି ଆନନ୍ଦରେ ଉପଭୋଗ କରୁଥାଆନ୍ତେ ସ୍ୱର୍ଣ୍ଣ ରୌଦ୍ରର ଏଇ ଅତପ୍ତ ଧାରାବର୍ଷଣ । ଆକାଶ ଏତେ ନୀଳ ଯେ ଆପଣଙ୍କ ଆଖି ଝଲସି ଯାଆନ୍ତା ସେ ନୀଳିମାରେ । 'ଆକାଶର ପାନପାତ୍ରେ ଢ଼ଳ ଢ଼ଳ ସୁବର୍ଣ୍ଣ ନଦୀର..., କଣ ଯା'ର ଦ୍ୱିତୀୟ ଚରଣ ? କିଏ ଲେଖିଥିଲା ଏଇ କବିତା ? ଏଇ କଥା ଚିନ୍ତା କରୁ କରୁ ହୁଏତ ଆପଣଙ୍କର ଅନ୍ୟମନସ୍କ ଆୟତ ଆଖିର ପରିଧି ଭିତରେ ଲଘୁ ପକ୍ଷ ବିସ୍ତାର କରି ଭାସି ଯାଆନ୍ତେ ମାନସ ପ୍ରତ୍ୟାଗତ ଯାଯାବର ହଂସ ବଳାକା (ଆହା ! ଏ ସାଲରେ ଅନେକ କମ୍ କାଶ ଫୁଲ) । ପବନରେ ମିଶି ମିଶି ରହିଛି ଏକ ଅଦ୍‌ଭୂତ ମିଶ୍ର ଗନ୍ଧ । ଶାରଦୀୟ ଧାନ କଟା ସରିଛି । କିନ୍ତୁ ଏଇନେବି ହେମନ୍ତର ସୁନାର ରଙ୍ଗ ଲାଗିନାହିଁ ଧାନରେ । କଞ୍ଚା ଆଉ ପାଚିଲା ଧାନର ଗନ୍ଧ... ନଈ ବାଲିର ଗନ୍ଧ... କେଉଟର ଜାଲ ଆଉ ଗାଈ ଗୋଠର ଗନ୍ଧ... ସବୁ କଣ ମିଶି ଯାଇଛି ? ସାରା ଦିନଟା ଯେପରି ଗନ୍ଧ ମନ୍ଥର ଗୋଟାଏ ଆଳସ ସୁନାର ଦିହିପହର । ପବନର ପରିଚିତ ଗନ୍ଧ ଲୋକାଳୟର ସନ୍ଧାନ ଦିଏ । କିନ୍ତୁ ଅଳ୍ପ ଦୂରର ବନ ସମ୍ପର୍କରେ ମନରେ ସମ୍ପୂର୍ଣ୍ଣ ପୃଥକ୍ ଚେତନା । ଲୋକାଳୟ ଓ ବନ୍ୟ ଜୀବନର ସୀମାରେଖା କେତେ ସଂକୀର୍ଣ୍ଣ । କେବଳ ଏଇ ଦିହିପହରର ବିଶେଷ ପରିବେଶ ଭିତରେ କପୋତ କଣ୍ଠର କରୁଣ ବିଳାପରେ ହୁଏତ ଏ ସୀମା ଅତିକ୍ରମ କରିଯାଇ ହେବ । ଶରତ୍ — ସୁନ୍ଦର ଶରତ୍ ।

ଆଜି ଛାତି ଭିତରେ ବହୁ କଥାର ଭିଡ଼ । ଯାହା ବହୁବାର ଆପଣଙ୍କୁ ପାଖରେ ପାଇ କହି ପାରିନାହିଁ । ଆଜି କିନ୍ତୁ ସଂକୋଚ ପ୍ରକାଶ କରି ଆପଣଙ୍କୁ ଅଯଥା ପୀଡ଼ିତ କରିବାକୁ ଚାହେଁ ନା । କିନ୍ତୁ ଆପଣତ ଜାଣନ୍ତି, ସବୁ କଥା କଣ ମୁହାଁମୁହିଁ କହି ହୁଏ ? ସେ କଣ କେବଳ ସଂକୋଚ ଲାଗି ? ...ନା, ସେ' ଆଉ ଏକ ଚନ୍ଦ୍ର ଜଗତର କଥା ଯାହାର ଆକର୍ଷଣର ଛନ୍ଦ ସହିତ ଏଇ ପୃଥିବୀର ଛନ୍ଦର ଅନେକ ତଫାତ୍ । ସେଠିକାର ଛନ୍ଦର ଅଭ୍ୟସ୍ତ ପାଦ ନେଇ ଏ ଜଗତରେ ଚାଲିଲେ ବହୁବାର ନିଜକୁ ବିଡ଼ମ୍ବିତ ହେବାକୁ ହୁଏ, ଏଇ ପୃଥିବୀ ପାଖରେ — ନିଜ ପାଖରେ ମଧ୍ୟ ।

ଅତି ଆଶ୍ଚର୍ଯ୍ୟ ! ଅବିଶ୍ୱାସ୍ୟ । ବିସ୍ମୟକର କଥା ସେ । ସେଇ କଥା, ଯାହାର ଜନ୍ମ ଦୀପାଲୋକିତ ମଧରାତ୍ରିର ଅସ୍ଫୁଟ ବାତାବରଣ ଭିତରେ, ଗାଢ ନିଦ୍ରାର ଅବଗୁଣ୍ଠିତ ଜାଗରଣ ଭିତରେ ଯାହାର ଉଦ୍‌ବୋଧନ ...ଯାହାକୁ କହିବାକୁ ଯାଇ ଧମନୀର ଶୋଣିତ-ସ୍ରୋତ କ୍ଷିପ୍ରତର ହୋଇ ଉଠେ । ଦେହର ଶିରା ପ୍ରଶିରା ହୋଇ ଉଠେ ବେପଥୁ, ଅବଶ... ସେଇ କଥା କେମିତି କହି ହବ ଏଇ ବହୁ ଉଚ୍ଛିଷ୍ଟ ଭାଷାରେ ? ଏଇ ଅସମ୍ଭବ

ଅନନ୍ୟ ସାଧାରଣ କଥାକୁ ଅତି ପରିଚିତ ଅଭ୍ୟସ୍ତ ବାତାବରଣ ଭିତରେ କହିବାକୁ ଯାଇ ମନେ ହୁଏ କି ଅଦ୍‌ଭୁତ ଆତ୍ମଦହନ । କି ଛନ୍ଦ ପତନ !

ଯେତେବେଳେ ହୁଏତ ଏଇ ଲଘୁ ପୃଥିବୀକୁ ଫୁଦ୍‌କାରରେ ସାବୁନ୍ ଫେଣ ପରି ଅକସ୍ମାତ ଉଡ଼େଇ ଦବାର କଥା, ଯେତେବେଳେ ହୁଏତ ମୁଠା ମୁଠା ତାରା ବିଞ୍ଚି ଖୁସିର ହସରେ ଉଜ୍ଜ୍ୱଳ ହୋଇଯିବାର କଥା, ଯେତେବେଳେ ହୁଏତ ସୂର୍ଯ୍ୟର ପ୍ରଦୀପକୁ ଫୁଙ୍କି ଲିଭେଇ ଦବାର କଥା...

ଅଥବା...

ଯେତେବେଳେ କିଛି ନ କରିବାର କଥା- କେବଳ ସ୍ତବ୍‌ଧତା । ଯେତେବେଳେ ନିର୍ବାତ ନିଷ୍କମ୍ପ ଦୀପଶିଖା ପରି ସ୍ଥିର ହୋଇଯାଏ ଦେହ ଆଉ ମନ, ଜଣକର ଆଖିର ତିମିରରେ ଅନ୍ୟର ଆଖିର ଜ୍ୟୋତି ହଜି ହଜି ଯାଏ, ସେତେବେଳେ କଣ ଦୁଇଜଣ ବସି ବସି କଥା କହିବେ ? ଯେମିତି ଆମେ କଥା କହୁ ଅତି ସାଧାରଣ ଭାବରେ ଦାର୍ଶନିକର ନିର୍ଲିପ୍ତତା ଓ ମନନଶୀଳତା ମିଶେଇ ମିଶେଇ । କଣ ପ୍ରୟୋଜନ ଏଇ ଯାନ୍ତ୍ରିକ ଅଭ୍ୟାସରେ କଥାକହି ଚାଲିବାର, ଯେତେବେଳେ ସମସ୍ତ ଇନ୍ଦ୍ରିୟ ଆଚ୍ଛନ୍ନ କରି ଅନୁଭବ କରାଯାଏ ଚରମ ପ୍ରାର୍ଥନାର ସେହି ଚିରଈପ୍‌ସିତ ଲଗ୍ନ ସମାଗତ ? ନାଁ- ଏଇ ଅତି ସାଧାରଣ ମନୁଷ୍ୟର ଉପସ୍ଥିତି ମୋର ଶ୍ୱାସରୁଦ୍ଧ କରିନିଏ । ଛିଃ ! ନିଜର ହାତର ପାପୁଲିରେ ମୁହଁ ପୋତି ଅଥବା ଅନ୍ୟର ଛାତି ଉପରେ ଲୀନ ହୋଇଯାଇ ଏଇ ଅତି ସତ୍ୟ ମନୁଷ୍ୟର ଉପସ୍ଥିତିକି ଏଡ଼ାଇ ଯିବାର ଭୀରୁ ଚେଷ୍ଟା ମୋର ଘୃଣ୍ୟ ମନେ ହୁଏ ।

ଏଇ ସାଧାରଣ ସାମାନ୍ୟ ପରିବେଶ ଭିତରେ କଣ କୁହାଯାଇ ପାରେ 'ଡ଼ିଭାଇନ୍ କମେଡ଼ି'ର କାହାଣୀ ?

ବରଂ ମନେହୁଏ କଠିନ ଧାତୁର ଆଘାତରେ କାଚ ପାତ୍ର ପରି ଚୂନା ହୋଇଯାଇ ନିୟୁତ ରେଣୁରେ ବିଞ୍ଚି ହୋଇ ପଡ଼ିବାକୁ । ତଫାତ୍ ଥାଉ, ଧ୍ୱନି ଧ୍ୱନିର ଯେଉଁ ତଫାତ୍‌ରେ ଛନ୍ଦ ରଚନା କରାଯାଏ । ବ୍ୟବଧାନ ଥାଉ, ଯାହା ମଝିରେ ଗଢ଼ାଯାଇ ପାରିବ କଳ୍ପନାର ସେଇ ପୃଥିବୀ ଯେଉଁଠି କାମନାର ପାନପାତ୍ରରେ ସ୍ୱପ୍ନର ସୁରା ପରିବେଷଣ କରାଯାଏ । ଥାଉନା ଏଇ ବ୍ୟବଧାନ... ଆତ୍ମବିସ୍ମୃତିର ଅବକାଶ ।

କିନ୍ତୁ ନା, ଆଜିର କଥା କାବ୍ୟ ନୁହଁ । ସୁନିର୍ଦ୍ଧାରିତ ଗଦ୍ୟର ଭାଷା । ମୁଁ ଆପଣଙ୍କୁ ପ୍ରତୀକ୍ଷା କରୁଛି । ମୋ'ର ନିଜର ଏଇ ଅନୁଭରିତ ପ୍ରତୀକ୍ଷାକୁ ଅବିଶ୍ୱାସ କରିବାର ସାହସ ମୋ'ର ନାହିଁ ।

କିନ୍ତୁ କାହିଁକି ଏ ଅମିମାଂସିତ ପ୍ରତିକ୍ଷା ? ଏ କଣ ସମାଜର ଅନୁଶାସନ ? ମୁଁ ଜାଣେନା ପ୍ରେମର ପରିଣାମ ବିଷୟରେ ସମାଜର କିଛି ନିର୍ଦ୍ଧାରିତ ଅନୁଶାସନ ଅଛି କି ନାହିଁ । ମୁଁ ଜାଣେନା ପ୍ରେମର ଗୋଲ୍ଡ ଷ୍ଟାଣ୍ଡାର୍ଡ଼ । ପ୍ରେମର ଚିରନ୍ତନ ସିକ୍ୟୁରିଟିରେ ମୋର ବିଶ୍ୱାସ ନାହିଁ । ଚେତନାର ଏଇ ଦୁର୍ଲଭ ଜାଗରଣ କେବଳ ବିଶେଷ ଅବସ୍ଥାରେ ହିଁ ସମ୍ଭବ । କୋଷ୍ଠୀ ମିଳେଇ ବୟସ ହିସାବ କରି କହୁନାହିଁ । କହୁଛି ମନର କଥା । ପୌଢ଼ ମନ ବା ବୃଦ୍ଧ ମନ ଭଲ ପାଏନା — ସ୍ନେହ କରେ । କବିତ୍ୱ କରି କୁହାଯାଏ ‘ଯେ ଜୀବନ ସମୁଦ୍ରର ଉଚ୍ଛ୍ୱସିତ ତରଙ୍ଗ ନୁହଁ, ସାମାନ୍ୟ କେଇଟି ଜଳବିନ୍ଦୁ ।’ ତରୁଣାୟନର ଏ ସଂକ୍ରମଣ କାଳ ସଂକ୍ଷିପ୍ତ । ଥାଇପାରେ କୌଣସି ଶକ୍ତିମାନ ଗ୍ରହ ଯେ କି ଆମରଣ ଏଇ ନିୟମକୁ ହେଳି ହେଳି ଉପହାସ କରି କରି ଚାଲେ । କିନ୍ତୁ ସେ’ତ ବ୍ୟତିକ୍ରମ । ତେଣୁ ପ୍ରେମିକର ଐକାନ୍ତିକତା ନେଇ କରିବି କଣ ? କ’ଣ କରିବି ଆଜୀବନ ଭଲ ପାଇବାର ଗ୍ୟାରେଣ୍ଟି ନେଇ ?...

ମନେ ପଡୁଛି ଆପଣଙ୍କର ସେଇ ତୃଷା ବ୍ୟାକୁଳ ଲୋକଟିର କଥା ? ତା’ ହାତରେ ଥିଲା ପେଛାଏ ଅଙ୍ଗୁର । ସେ ମରୁପଥ ଓ ଗିରିସଙ୍କଟ ଦେଇ ପଥବାହି ଚାଲିଛି । ଅସମ୍ଭବ ତୃଷାତୁର ସେ । କିନ୍ତୁ ତା ବୋଲି ସେ କ’ଣ ଅଙ୍ଗୁର ଖାଇବ ? ଅତି ସତର୍କତାର ସହିତ ସେ ଧରି ରଖିଛି ଅଙ୍ଗୁର ପେଛାକୁ । ଦୁଃଖର ପଥ ସମାପ୍ତ ହୋଇ ଆସିଛି । କିନ୍ତୁ ହାୟ ପାନ୍ଥ ! ଦ୍ରାକ୍ଷା ସବୁ ପେଷି ହୋଇଯାଇ ନିର୍ଯ୍ୟାସ ସବୁ ନିଃଶେଷ ହୋଇଯାଇଛି ଆଙ୍ଗୁଠିର ଫାଙ୍କ ଦେଇ ।

ଦ୍ରାକ୍ଷାବାହୀ ଉଷ୍ଟ୍ର ମୁଁ ନୁହଁ, କାମ୍ୟ ନୁହଁ ମୋର ଏ ଦୁସ୍ତର ମରୁ ଲଂଘନ ।

ନା, ଶାନ୍ତି ଯେ’ ନୁହଁ । ଏ ନରକ । ଅତି ଘୃଣ୍ୟ ଭୟାବହ ନର୍କ ଯାହା ମଝିକି ମୁଁ ଓହ୍ଲେଇ ଆସିଛି । ନୀଳ ଆକାଶ, ସୁନେଲୀ ଖରା ଯାହାକୁ ମୁଁ ଦିନେ ଏତେ ଭଲ ପାଉଥିଲି ସବୁ ଏଠି ଉଭେଇ ଯାଇଛି । କିଛି ଦେଖି ହୁଏ ନା । ଏଇ ନରକର କେନ୍ଦ୍ରରେ ଥାଇ ଜୀବନର ଦୃଦ୍‌ପଦ୍ମରେ ମୁଁ ସେହି ଭୟାନକ ଦୁଃଖକୁ ପ୍ରତ୍ୟକ୍ଷ କରୁଛି । କି ଭୟଙ୍କର । କାହିଁ ରାଗିଣୀ ? କାହିଁ ସୁର ? କାଶ୍ମିରୀ ବାଳିକାର ବକ୍ଷ ଲଗ୍ନ କାଙ୍ଗ୍ରା ନିଆଁର ସେହି ସୁମଧୁର ଦହନ କାହିଁ, ଯାହା କବିକଳ୍ପନାକୁ ଉଦ୍ଦୀପ୍ତ କରେ । ମୋର ଚେତନା ଶିହରି ଉଠୁଛି । ପଥ ରୁଦ୍ଧ । ପତଙ୍ଗ କେବେ ଏଡ଼ିଯାଇ ପାରିଛି ଅଗ୍ନିର ଦହନ ? କିନ୍ତୁ ତଥାପି... ମୁଁ ଆଜି ଅଭିଶପ୍ତ ଛିନ୍ନପକ୍ଷ ମୈନାକ ପରି କେବଳ ଉଦ୍ଧାର ପାଇବାକୁ ଚାହେଁ । ମୁଁ ବନ୍ଦର ଚାହେଁ, ମୋର ତରୀ ଛିଦ୍ରମୟ । ସେଭ୍ ମାଇଁ ସୋଲ୍ ।

ନାଁ, କବିକଳ୍ପନାର ମହିମା ମଧ ମୋର ପ୍ରାପ୍ୟ ନୁହେଁ । ମୁଁ ଗୋଟିଏ ହତଭାଗ୍ୟ କୃପାପାତ୍ର ଯେ’ କି ସହାନୁଭୂତି ଚାହେଁ...ଅଥଚ...ଦିନେ ତା’ର ଭଲ ପାଇବା ପାଇଁ ପ୍ରଚଣ୍ଡ କାମନା ଥିଲା । ଅତ୍ୟନ୍ତ ଦୀନ ପରି ଏଇ କୃପା, ମୁଁ ଘୃଣାର ସହିତ ପ୍ରାର୍ଥନା

କରୁଛି । ପୋତାଶ୍ରୟରେ କ'ଣ ମୁଁ ନିଜକୁ ନିଜେ କ୍ଷମା କରିପାରିବି ? ହଏତ ହଁ, ହଏତ ନାଁ... ମୁଁ ଜାଣେନା ।

କିନ୍ତୁ ଯା' ପାଇଁ ମୁଁ ଆପଣଙ୍କୁ ଦାୟୀ କରୁନାହିଁ । ଆଜି ନିଜ ଉପରେ ନିଜର ମଧ କିଛି ଅଭିଯୋଗ ନାହିଁ । ଆକ୍‌ସିଡେଣ୍ଟ୍ ନୁହଁ, ମୋହ ନୁହଁ, ଯେ ମୋ'ର ମନର ମସୃଣ ଶିଳାଖଣ୍ଡ ଉପରେ ସହଜ ସୁନ୍ଦର ଶୈବାଳ । ମୋ'ର reason ମତେ ବାରମ୍ବାର ପ୍ରତାରିତ କରିଛି । ଶୁଣିଛି, ଜୀବନ ସମ୍ପର୍କରେ ନିର୍ଦ୍ଦିଷ୍ଟ ଥିଓରୀ ନ ଥିଲେ ଜୀବନ ଉପଭୋଗ କରାଯାଏ ନା । କିନ୍ତୁ ଏ ଥିଓରୀ କଣ ପଙ୍ଗୁ ମନର ବିକୃତ ପରିକଳ୍ପନା ? ତା' ନ ହେଲେ ପ୍ରେମ ସମ୍ବନ୍ଧରେ ଏତେ ଦର୍ଶନ ଜାଣି ସୁଦ୍ଧା, ଏଇ ଆତ୍ମବିଚ୍ୟୁତିର କଣ ହୁଅନ୍ତା ପରିଣାମ ? ସୁନ୍ଦର ଦର୍ଶନ । ଏକନିଷ୍ଠ ପ୍ରେମର ଅମର କାବ୍ୟ । ଧ୍ୟାନରେ, ତପସ୍ୟାରେ, ଏକାଗ୍ର ଚିତ୍ତରେ ପ୍ରେମିକର ଆରାଧନା । ମୋ'ର ପ୍ରେମକୁ ମୁଁ ବହୁ ଆଧାରରେ, ବହୁ ରୂପରେ, ବିଭିନ୍ନ ପରିବେଶ ମଧ୍ୟରେ, ବହୁ ପ୍ରେମିକ ମଝିରେ ବିଚିତ୍ର ବିକାଶରେ ଆସ୍ୱାଦନ କରିଛି । ମୋ'ର ଭଲପାଇବାର କ୍ଷମତା ଅନେକ । ମୋ'ର ପରିଧି ବିସ୍ତୃତ । କିନ୍ତୁ ଏଇ ବିଚାରସିଦ୍ଧ ପଙ୍ଗୁ ମନ କଣ ମୋ'ର ଗତାନୁଗତିକ ଦର୍ଶନର ଶିକୁଳି ଛିଣ୍ଡେଇ ବୁଡ଼ି ଯାଇଛି ତଳକୁ-ତଳକୁ-ଆହୁରି ତଳକୁ ....... ଯେଉଁଠାରେ ବୁଦ୍ଧିର ବନ୍ଧନ ଶିଥିଳ ହୋଇ ଖସି ପଡ଼େ, ଯେଉଁଠି ଏକାକାର ହୋଇଯାଏ ପ୍ରେମ ଓ ପ୍ରେମିକ । ଯେଉଁଠି କିଛି ନାହିଁ, କେବଳ ଅଛି ବେଦନାର ଜ୍ୱାଳାମୟୀ ଅଗ୍ନି ଅନୁଭୂତି... । ମତେ ସାନ୍ତ୍ୱନା ଦିଅନ୍ତୁ ନାହିଁ । ମୁଁ ମୋର ପରିଣତି ଜାଣେ । ଆଇ ଆମ୍ ଲଷ୍ଟ୍ — କମ୍ପ୍ଲିଟ୍‌ଲି ଲଷ୍ଟ୍ ।

ବ୍ୟର୍ଥ ପ୍ରେମିକାର ଜୀବନରେ ସାନ୍ତ୍ୱନା ଅଛି । ପ୍ରତ୍ୟାଖ୍ୟାତର ଜୀବନରେ ଦାହ ଅଛି, ଘୃଣା ଅଛି । କିନ୍ତୁ ତଥାପି ଅଛି ତା'ର ଦୁଃଖର ବିଳାସ, ବ୍ୟର୍ଥତାର ଆନନ୍ଦ, ନ ପାଇବାର ତୃପ୍ତି । ଇସ୍ ! କି ଘୃଣ୍ୟ ଏଇ ଭଲପାଇବା — ଲୋଥ୍‌ସମ୍ ।

ଏଇନେ ବି କିନ୍ତୁ ସବୁ ଶେଷ ହୋଇଯାଇନାହିଁ । ବର୍ତ୍ତମାନ ମଧ ମୁଁ ମୋ'ଥିରେ କିଛି ଅବଶିଷ୍ଟ ଅଛି । ଭୟ ମୁଁ ଜାଣେନା- ବାଧା ପାଇ ମୁଁ କେବେ ପୃଷ୍ଠ ପ୍ରଦର୍ଶନ କରି ନାହିଁ । ଦୁଃଖ ଯେତେ ଭୟାନକ ହଉନା କାହିଁକି ସମ୍ପୂର୍ଣ୍ଣ ନଷ୍ଟ ହୋଇଯିବା ପୂର୍ବରୁ ଜଟାୟୁ ପରି ମୁଁ ଥରେ ତା' ସହିତ ପଞ୍ଝା ଲଢ଼ି ଯାଇପାରେ ।

ଆପଣ ଜାଣନ୍ତି ତ ବ୍ୟର୍ଥ ମଣିଷର ସାହସ !
ଦେଖିଛନ୍ତି ତ ମୁମୂର୍ଷୁ ପ୍ରଦୀପର ଅନ୍ତିମ ଜ୍ୱଳନ ।

ଆଜି ମତେଇ ଆରମ୍ଭ କରିବାକୁ ହେବ । ମତେ କହିବାକୁ ହେବ ପ୍ରଥମ କରି ଯାହା କୁହାଯାଏ ନାଁ । ବ୍ୟର୍ଥତାର ଦହନରେ ମୋର ଆଖି ଆଜି ଈର୍ଷା-ନୀଳ । ଆହତ ନାଗିନୀ ପରି ମତେ ଫୁତ୍କାର କରିବାକୁ ହେବ ଅକ୍‌ସି-ଆସିଟେଲିନ୍ ଫ୍ଲେମ୍‌ର ଗରଳ

ଛଳିଯାଉ, ତରଳି ଯାଉ ଆପଣଙ୍କର ଇସ୍ପାତ୍‌ର ଛଦ୍ମ ସାଜ୍ । ଠିକ୍ ତା'ରି ପରେ ପରେ ପୁଷ୍ପ-ପିନାକରେ ସନ୍ଧାନ କରାଯିବା ଉଚିତ୍ ନୟନର ନୀଳୋତ୍ପଳ ।

ନା, ବଜ୍ର ଦେଇ ପୁଷ୍ପ ଚୟନ କରାଯାଏ ନା । ବିଷର ପାତ୍ରରେ ଅମୃତ ଆସ୍ୱାଦନ କରାଯାଏ ନା । ମୁଁ ସ୍ୱୀକାର କରୁଛି, ଆଣ୍ଠୁ ଭାଙ୍ଗି ଆପଣଙ୍କ ଆଗରେ ବାରମ୍ବାର ସ୍ୱୀକାର କରୁଛି ମୋ'ର ଏଇ ଦାରିଦ୍ର୍ୟ, ନିବେଦନ କରୁଛି ମୋର ଏଇ ଦୀନ ମିନତି ।

ମୁଁ ଚାହେଁ ଆପଣ ମତେ ଏଇ ବାତାବରଣରୁ ଛିନ୍ନ କରି ଉର୍ଦ୍ଧ୍ୱକୁ ନେଇଯାଆନ୍ତୁ । ବଜ୍ରର ଆଲୁଅରେ ମୁହାଁମୁହିଁ କରି ଦିଅନ୍ତୁ ମୃତ୍ୟୁ ସହିତ ...ତାପରେ ? ତା ପରେ ଯାହା ଇଚ୍ଛା ...ଛାଟିଦିଅନ୍ତୁ କେଉଁ ହତଭାଗା ନାମହୀନ ବନ୍ଦରକୁ, ଚୂନା କରିଦିଅନ୍ତୁ କାଚର ପାତ୍ର ପରି କିମ୍ବା ଫୋପାଡ଼ି ଦିଅନ୍ତୁ ବିସ୍ମୃତିର ଚିରତମିସ୍ର ଦେଶକୁ, But oh ! Love me.......

ଆପଣଙ୍କର କାମନାରେ ଜୋର୍ କାହିଁ ? କାମନା ସହିତ ସାକ୍ଷାତ୍‌କାର ହୋଇଛି କେବେହେଲେ ? କାମନା କରିଛନ୍ତି ଆପଣ ଖଣ୍ଡେ ସିଗାରେଟ୍, କପେ କଫି, ଗୋଟାଏ ନରମ ଉଷ୍ଣମ୍ ଦିନ, ଗୋଟାଏ ଫୁଲ, କାହାରି ମନଯୋଗ, କାହାରି ସ୍ନେହ ?... ତାହାହେଲେ ଏଇ ସର୍ବବ୍ୟାପୀ କାମନାକୁ ଠୁଳ କରି ମୂର୍ତ୍ତିରେ ରୂପ ଦିଅନ୍ତୁ । ଜନ୍ମ ହେଉ କାମନାସମ୍ଭବା ଉର୍ବଶୀର, ଯେ ଅତି ଲଘୁଭାର ପାଦ ଥୋଇ ଛିଡ଼ା ହୋଇଛି ବିକଶିତ ବିଶ୍ୱବାସନାର ଅରବିନ୍ଦ ମଞ୍ଜିରେ । ଏଇ ନୃତ୍ୟ ଚପଳ ଉର୍ବଶୀର ସ୍ତନହାରରୁ ଯେତେବେଳେ ନଭନିମ୍ନରେ ଅକସ୍ମାତ୍ କକ୍ଷଚ୍ୟୁତ ହୁଏ ଗୋଟିଏ ଉଜ୍ଜ୍ୱଳ ତାରା ... ସେତେବେଳେ କଣ ଚିତ୍ତ କ୍ଷଣକ ପାଇଁ ଆତ୍ମହରା ହୁଏନା ? ନାଚିଉଠେନା ରକ୍ତଧାରା ?

ଆଃ ! ଫିଙ୍ଗିଦିଅ ବନ୍ଧୁ ଆଜିର ଏଇ ନିସ୍ତରଙ୍ଗ ନିର୍ବେଦ ଜୀବନ । ପୁଣି ମଦନର ଜନ୍ମ ହେଉ, ଭସ୍ମର ଆବରଣ କାଟି ଫୁଟିଉଠୁ ପୁଷ୍ପଧନୁ ।

ନା, ଏ ପଙ୍କୁଜୀବନଠାରୁ ଅନେକ୍ ଅନେକ୍ ଭଲ କ୍ଷଣିକର ଲାଗି ଜଳି ଉଠିବା ।

କିନ୍ତୁ ତା' ବୋଲି ମୁହୂର୍ତ୍ତବାଦୀର ଦର୍ଶନରେ ମୋର ରୁଚି ନାହିଁ । ଅତୀତ ଓ ଭବିଷ୍ୟତର କାର୍ଯ୍ୟ ପରମ୍ପରାଠାରୁ ବିଚ୍ଛିନ୍ନ କରି, ଏକ ମୁହୂର୍ତ୍ତର ପ୍ରୟୋଗରେ ଆଶ୍ରୟ ନେବା ଏକପ୍ରକାର ଛଦ୍ମବେଶୀ ପଳାୟନବାଦ । Statistics ର average ପରି ବର୍ତ୍ତମାନ ମୁହୂର୍ତ୍ତ ସତ୍ୟ ହେଲେ ମଧ୍ୟ ଅବାସ୍ତବ । 'ବର୍ତ୍ତମାନ'ର ସଂଜ୍ଞା ହିଁ ହେଲା 'Past gnawing the future' । ଠିକ୍ ସେମିତି ପୃଥିବୀର ଆଜି ଶେଷଦିନ ନୁହଁ, ଯାହାର ପରିଣାମ କାଲକୁ ସମସ୍ତ ଆନନ୍ଦ ଓ ଗ୍ଲାନିର ସହିତ ଚରମ ବୋଲି ମୁଁ ମାନିନେବି ।

ମୁଁ ସାଧାରଣ । ବଞ୍ଚିରହିବାର ଆନନ୍ଦକୁ ଦେହ ଧାରଣର ଗ୍ଲାନିଠାରୁ ସ୍ୱତନ୍ତ୍ର କରି ମୁଁ ଦେଖେ ନା । ମୁଁ ଭଲପାଏ ଏଇ ପୃଥିବୀକୁ ଖଣ୍ଡ ଖଣ୍ଡ ଅଂଶରେ, ତାର ସୀମିତ ଭଗ୍ନାଂଶ ମତେ ପୀଡ଼ିତ କରେ । ଯାହାକିଛି ଅସମାପ୍ତ ତାକୁ ମୁଁ ସମ୍ପୂର୍ଣ୍ଣ କରି ତୋଳେ ମୋ'ର କଳ୍ପନାରେ । ମୋ'ର କଳ୍ପନା ଆକାଶର ସପ୍ତବର୍ଣ୍ଣୀ ଇନ୍ଦ୍ରଧନୁର ଚାପ ନୁହଁ । ସେ ହେଲା ସହସ୍ରଦଳ ପଦ୍ମ, ଯେ ଜନ୍ମ ନେଇଛି ପଙ୍କର ଜରାୟୁ ବିଦୀର୍ଣ୍ଣ କରି । କଳ୍ପନାର ଚୂଡ଼ାରେ- ପିଗାସ୍‌ର ପ୍ରଶସ୍ତ ପିଠିରେ ମୁଁ ଯେତେ ଉପରକୁ ଯାଏ ନା କାହିଁକି, ହଜିଯାଏ ନା କାହିଁକି ecstasyର ଶୂନ୍ୟତା ଭିତରେ ମୁଁ ଜାଣେ ମୋର ଆଦି ଜନନୀ ଏଇ ପ୍ରଥମ ପଙ୍କର ଋଣ ମତେ ଦିନେ ପରିଶୋଧ କରିବାକୁ ପଡ଼ିବ । ମୁଁ ସାବଧାନ ଅଛି । ମୋର ସେଥିପାଇଁ ଭୟ ନାହିଁ । ଯେଉଁ ପ୍ରେମ ସେମାନେ ଭୋଗ କରି ଜାଣନ୍ତି ନାହିଁ ତା'କୁ କହନ୍ତି ପାପ । ଯେଉଁ ମରଣ ସେମାନେ ମରି ଜାଣନ୍ତି ନାହିଁ ତା'କୁ କହନ୍ତି ଗରଳ । କିନ୍ତୁ, ମୁଁ ଦେଖିଛି ଏ ଗରଳ ଆସନ ନେଇଛି ଧୂର୍ଜଟୀର ବିଷନୀଳ କଣ୍ଠରେ । ଭୟ, ଗ୍ଲାନି, ନିନ୍ଦା, ଦୁଃଖ, ଆନନ୍ଦ, ସବୁ ମୋର ଥାଉ । ନିଜର ଭାର ମୁଁ ନିଜେ ଗ୍ରହଣ କରିଛି । ମୁଁ ପରିପୂରକ ଅଂଶ ମାତ୍ର ନୁହଁ । ମୁଁ ସ୍ୱୟଂ ସମ୍ପୂର୍ଣ୍ଣ । ମୁଁ ଅଛି ।

ମୋର ସନ୍ଦେହ ହୁଏ । ଯାହା ମୁଁ କହିଚାଲିଛି ତା'ର ବାସ୍ତବ ମୂଲ୍ୟ ସମ୍ପର୍କରେ କଣ ମୋ'ର ଯଥାଯଥ ଧାରଣା ଅଛି ? ନା ଏ ଖାଲି କାବ୍ୟର ଉଲ୍ଲାସ ? ଏଇ ପରିଣାମ ଶୂନ୍ୟ କ୍ଷଣ ବସନ୍ତର ମାନେ କଣ ? କଣ ମାନେ ବଞ୍ଚି ରହିବାର ? କିଛି ଅର୍ଥ ଅଛି ? ହିସାବୀ ମନର ମାପକାଠିରେ ମାପି ଦେଖିଲେ ପ୍ରକୃତରେ କିଛି ନାହିଁ । କେବଳ ଅଛି ଏକ ଅପୂର୍ବ ରହସ୍ୟମୟ ଚିତ୍ର ଓ ଚମତ୍କାର ଖେଳର ଆନନ୍ଦ । ଏଇ ଅପ୍ରୟୋଜନର ବିପୁଳ ବିଳାସ ନେଇ ତ ଗଢ଼ାହୁଏ ମହାକାବ୍ୟ ।

କିନ୍ତୁ କ୍ଲାନ୍ତି କାହିଁକି ? ଅରୁଚି କାହିଁକି ଏ ଖେଳରେ ? ହିସାବ ନିକାଶ କରି କରେନ୍‌ସୀ ନୋଟ୍ ସହିତ ତଉଲି ଅର୍ଥ ବାହାର କରିବାର ଏ ସାବଧାନୀ ଚେଷ୍ଟା କାହିଁକି ? ଏତେ ଲୋଭ କାହିଁକି ଜୀବନଟାକୁ ଯୋଜନାକରି କାଟି ବାଦ୍ ଦେଇ, ସଜେଇ ପୌଢ଼ର ନିଶ୍ଚିନ୍ତ ପ୍ରଶାନ୍ତି ଲାଭରେ ? ସେୟା କଣ ଜୀବନର ଚରମ ଅର୍ଥ ? ଆପଣ ଜାଣନ୍ତି, ଶିଶୁ ଯେତେବେଳେ ଖେଳେ ସେ ଏତେ ଅର୍ଥ ନେଇ ଯଚେଇ ନେବାକୁ ଚାହେଁ ନା । ଖେଳର ଉପକରଣ ପାଇଁ ହୁଏତ ଘରଦ୍ୱାର, କରେନ୍‌ସୀ ନୋଟର ପ୍ରୟୋଜନ, ନିୟମ ବୁଝିବା ତା'ର ଦର୍ଶନ, ତା'ର ରାଜନୀତି, କିନ୍ତୁ ତା'ର ଚରମ ଲକ୍ଷ୍ୟ ତ ହେଲା ଖେଳିବା । ଖେଳିବାର ହାଲୁକା ନିରାଡ଼ମ୍ବର ଆନନ୍ଦ । ଜୀବନଟା ଆଉ କିଛି ନ ହୋଇ ଗୋଟାଏ ବର୍ଣ୍ଣାଢ଼୍ୟ ଖେଳନା ହେଲେ କ୍ଷତି କଣ ? ଏରୋପ୍ଲେନ୍ ନେଇ ଖେଳି ଖୁସି ହେଲେ ବିଶେଷ ଅପବ୍ୟବହାର ହେବ ନାହିଁ ତା'ର ।

ଏଇ ଖେଳର ତାଗିଦ୍ ଅଛି ମନୁଷ୍ୟ ପ୍ରାଣରେ ।

ପଶୁ ତା'ର ପ୍ରୟୋଜନର ଊର୍ଦ୍ଧ୍ୱକୁ ଯାଇପାରି ନାହିଁ । କିନ୍ତୁ ମନୁଷ୍ୟ ପ୍ରୟୋଜନ ମେଣ୍ଟାଇ ଆୟୋଜନର ବିଳାସରେ ମନ ଦେଇ ପାରିଛି ।

ଏଇ ଆଲୋଚନା ଏଇଠାରେ ଶେଷ କଲି । ନିଜକୁ ସାଧ ଅନୁଯାୟୀ ବିଶ୍ଳେଷଣ କରି ଉପସ୍ଥାପିତ କରିବାକୁ ଚେଷ୍ଟା କରିଛି । ତେଣୁ ଭୁଲ ବୁଝାର ଅବକାଶ ନ ଆସୁ । ଆହୁରି ଶୁଣନ୍ତୁ, ଆପଣଙ୍କୁ ମୋ'ର ନିତାନ୍ତ ଦରକାର । ଯେ' କେବଳ ଖିଆଲ ନୁହଁ । ଆପଣଙ୍କୁ ବାଦ୍ ଦେଲେ ମୋ'ର ଶିଳ୍ପ ସୃଷ୍ଟି ବ୍ୟାହତ ହେବ । ମୋ'ର କଳ୍ପନା ଅପୂର୍ଣ୍ଣ ରହିଯିବ । ଆପଣଙ୍କୁ ବାଦ୍ ଦେବା ଅର୍ଥ ନିଜଠାରୁ କିଛି ଅଂଶ କାଟି ଫୋପାଡ଼ି ଦେବା । ଆପଣଙ୍କୁ ସତରେ ମୋର ଭୟାନକ ପ୍ରୟୋଜନ । ଆମେ ନୂଆ କାବ୍ୟ ରଚନା କରିବା, ନୂଆ ପୃଥିବୀର କାବ୍ୟ ।

ଯଦି କିଛି ଶୁଭେଚ୍ଛା ପ୍ରକାଶ କରି ଚିଠି ସମାପ୍ତ କରିବା ରୀତି ହୁଏ, ତେବେ ମୁଁ କାମନା କରୁଛି ମୋର କାମନା ମଝିରେ ଆପଣଙ୍କର ପୁନରୁଜ୍ଜୀବନ ହେଉ-

ହେ ! ହିରଣ୍ୟଦ୍ୟୁତି ତମେ ପ୍ରକାଶିତ ହୁଅ ।
ମୋ'ର ପ୍ରୀତି ଜ୍ଞାପନ କରି ଲିପି ଶେଷ କଲି ।

ଏକାନ୍ତ
କୃଷ୍ଣମୟୀ

ମୋ'ର ଚିଠି ମଧ୍ୟ ସମାପ୍ତ କରୁଛି ମୁଁ ସୁଜାତା !-ସବୁ ନାରୀ ଉମାର ଅଂଶରେ ଜନ୍ମ । ଉଦାସୀନକୁ ଧରିବା ପାଇଁ ତାଙ୍କର ଆମରଣ ସାଧନା । ଆଜି କୃଷ୍ଣମୟୀର କ୍ଷୋଭ ନାହିଁ । ସେ' ବିଜୟିନୀ ।

ମୁଁ ପରାଜିତ । ଆଉ ତମେ ତ ଜାଣ ସୁଜାତା, ଚିରଦିନ ମୋ'ର ମସ୍ତକରେ ପରାଜୟର ମୁକୁଟ ।

ମୋର ଆନ୍ତରିକ ସ୍ନେହ ନିଅ ।
ତୁମର
ମୁଁ

# ଅଷ୍ଟମୀ

ମଇ ର ଅପରାହ୍ଣ

ସୁଜାତା,

ଚାରିଆଡ଼େ ଖୁବ୍ ଚୁପ୍‌ଚାପ୍ ।

ବୈଶାଖ ଅପରାହ୍ଣର ଅସହ୍ୟ କ୍ଲାନ୍ତିର ଯେପରି ଅବସାନ ହୋଇଛି ଆଜି । ସଂଧ୍ୟା ହବାକୁ ଅନେକ ଡ଼େରି ଅଛି, ଅଥଚ ଖରା ମଳିନ ପଡ଼ି ଆସିଲାଣି । ଆକାଶ ଆଉ ପୃଥିବୀ ଯେପରି କେବଳ ଗୋଟାଏ ରଙ୍ଗ, ଗୋଟାଏ ପ୍ରଲେପ— ଲଘୁଧୂସର ।

ଏଇ ଧୂସର ରଙ୍ଗ ପ୍ରତି ମୋର ମନ ଭିତରେ ଗୋଟାଏ ଚିରନ୍ତନ ଦୁର୍ବଳତା ଅଛି । ଆଉ ଠିକ୍ ସେଇଥି ପାଇଁ ବୋଧହୁଏ ତମର ଧୂସର କେଶଗୁଚ୍ଛ ଆଉ ଦୁଇଟା ଭ୍ରୂ ମତେ ଏତେ ନିବିଡ଼ ଭାବରେ ଆକର୍ଷଣ କରି ପାରିଥିଲା । ସେଦିନର ସବୁଜ ମନ ନେଇ, ହଏତ ସାମାନ୍ୟ କବିତ୍ୱ କରି ମୁଁ ମୋର ବନ୍ଧୁ ମହଲରେ କହିଥିଲି —

'ସେଇ ଝିଅଟିକୁ ମୁଁ ଆବିଷ୍କାର କରିଛି ଗୋଟାଏ ସୁନା ଖଣି ଭିତରୁ, ଦେଖୁନାହିଁ ? ତା'ର ବାଳରେ ଅସଂଖ୍ୟ ସୁବର୍ଣ୍ଣ ରେଣୁ ଲାଗି କି ସୁନ୍ଦର ରଙ୍ଗ ହୋଇଛି । କିନ୍ତୁ ସେ'ଦିନ ମୁଁ ଭୁଲ କହିଥିଲି ।'



ମୁଁ ଆଜି ବୁଝୁଛି ତମର ଜନ୍ମ କୌଣସି ସୁନାଖଣି ଭିତରେ ନୁହଁ, ବା ସୁବର୍ଣ୍ଣରେଖାର ତୀରବ୍ୟାପୀ ବିସ୍ତୃତ ବାଲିଚରରୁ ନୁହଁ । ତମର ଜନ୍ମ ହଏତ ଠିକ୍ ଆଜିପରି ଗୋଟାଏ ଅଗ୍ନି-ପିଙ୍ଗଳ ବୈଶାଖରେ ।

ଧୂସରତାର ଗୋଟାଏ ଅଦ୍‌ଭୁତ ଆକର୍ଷଣ ଅଛି ମୋ ପ୍ରତି । ଧୂସର ଗୋଧୂଳି, ଧୂସର ତମର ତନୁଶ୍ରୀ । ଆଉ ଧୂସର ମୋର ଅତ୍ୟାଚାରିତ ଫେଲ୍‌ଟ ଟୋପିର ରଙ୍ଗ ।

ଆଜିର ଏଇ ଧୂସର ବୈଶାଖର ସ୍ତବ୍ଧତା ଭିତରେ ମୋ ସାମ୍ନାର କେଇଟି ଗୃହପାଳିତ କାକ୍‌ଟସ୍ ମତେ ଅସହାୟ ଭାବରେ ଚାହିଁ ରହିଛନ୍ତି । ଏଇ ଉତ୍ତପ୍ତ ବୈଶାଖର ତୀବ୍ର ଆନନ୍ଦ ବୋଧହୁଏ ସେମାନଙ୍କର ଦେହରେ ରୋମାଞ୍ଚର ଅସଂଖ୍ୟ କଣ୍ଟା ଫୁଟେଇଛି ।

କିନ୍ତୁ ଆଜିର ମୁହୂର୍ତ୍ତକୁ ଉପଭୋଗ କରିବାକୁ ମୁଁ ସତରେ ଅସମର୍ଥ । ମୋର ଫ୍ରିଜିଡ୍‌ୟାର ଏକାଥରକେ ଖାଲି । ଗୋଟାଏ ଦୁଇଟା ବିଅର୍ ବୋତଲର ସାହଚର୍ଯ୍ୟରେ ହୁଏତ ଆଉ ଟିକିଏ ଆମେଜ୍ ଲଗେଇ ପାରିଥାଆନ୍ତି ମନରେ । ଶୁଣିଥିବ ଏକଦା କୌଣସି ଏକ ନିଶାର୍ଦ୍ଧରେ କୌଣସି ମୂର୍ଖ ମଦ୍ୟ ବ୍ୟବସାୟୀ ଓମାର୍ ଖାୟାମ୍‌କୁ ମଦ୍ୟଦବାକୁ ମନା କରି ଦେଇଥିଲା । କିନ୍ତୁ ଷ୍ଟୁପିଡ୍ ! ସେ କ'ଣ ବୁଝିଲା ସେଦିନ ବିଶ୍ୱସାହିତ୍ୟ ପୃଷ୍ଠାରୁ ଚିରଦିନ ପାଇଁ ଲିଭିଗଲା କେଇଟି ଆସନ୍ନପ୍ରସବା ସ୍ୱର୍ଣ୍ଣପଂକ୍ତି ? ମୋର ଔଦ୍ଧତ୍ୟ କ୍ଷମା କର ।

ମୋ'ର ସେଦିନର ମନର ନୀଳ ହ୍ରଦରେ ଆଜି ବାଲି ମାଡ଼ିଯାଇଛି । ବାଲିର ସମୁଦ୍ର ଏକାଥରକେ ନିସ୍ତରଙ୍ଗ । ମଝିରେ ମଝିରେ ଥରେଅଧେ ଯାହା ବାଲିଝଡ଼ ଉଠେ ସେଠି । ଆଉ ତା'ରି ଅତ୍ୟାଚାରରେ ମୋର ସାହିତ୍ୟ ପିପାସା ଅଷ୍ଟ୍ରିଚ୍ ପରି ନିଜର ପକ୍ଷ ଭିତରେ ମୁହଁଗୁଞ୍ଜି ଅପେକ୍ଷା କରି ରହେ ଏଇ ଅଶୁଭ ଝଡ଼ର ଅବସାନ ମୁହୂର୍ତ୍ତକୁ । କିନ୍ତୁ ତୁମେ ହିଁ କୁହ ସୁଜାତା ! ଏଇ ଭୀରୁ-ଅସହାୟ-ଅତ୍ୟାଚାରିତ ଅଷ୍ଟ୍ରିଚ୍ କଣ ସାହିତ୍ୟ ସୃଷ୍ଟି କରିପାରେ ? ମୋ'ର ଆଖି ଆଗରେ ଭାବନାର କେତେ ସ୍ୱଚ୍ଛ ଝରଣା ଶୁଖିଯାଇଛି ଏଇ ବାଲିର ନିଷ୍ଠୁର ଆଲିଙ୍ଗନ ଭିତରେ । କେତେ ବ୍ୟାକୁଳ ହୋଇ ମୁଁ ନିଜର କ୍ଳାନ୍ତ ଆଙ୍ଗୁଠି ଦେଇ ଖୋଳିଛି ମୋର ମନର ହରପ୍ପା । କିନ୍ତୁ ହାୟ ! ଖାଲି ବାଲି ଆଉ ବାଲି । ଏ ବାଲିର ଶେଷ ନାହିଁ ଯେମିତି ।

ବର୍ତ୍ତମାନ ମୋର ମନରେ ଠିକ୍ ସେଇ ଅସହାୟ ଅବସ୍ଥା । କଣ ଲେଖିବି ତମ ପାଖକୁ ? ଯଦି ଲେଖିବି ମୁଁ ତମକୁ ଭଲପାଏ, ତାହାହେଲେ କଣ ହବ ରୋମନ୍ଥନ କରି ସେଇ ବହୁ ଚର୍ଚ୍ଚିତ ଅଶୁଭ ସତ୍ୟକୁ ? ମୁଁ ଯଦି କହନ୍ତି ମୁଁ ତମର ମୃତ୍ୟୁ କାମନା କରେ, ତାହାହେଲେ ହଏତ ସତ୍ୟ କୁହନ୍ତି । କିନ୍ତୁ ନା ଭଗବାନ୍ ନ କରନ୍ତୁ ତମେ ବଞ୍ଚି ରହ । କିନ୍ତୁ ମୁଁ ତମକୁ ଘୃଣା କରେ କହିଲେ ମଧ ଠିକ୍ ସେଇ ଅବସ୍ଥା । ଏଇଟା ହବ ଗୋଟାଏ ପ୍ରିୟ-ଅସତ୍ୟ ଯାହା ମୁଁ ବହୁ ଆୟାସ ସତ୍ତ୍ୱେ ସଫଳତାର ସହିତ ଆୟତ୍ତ କରି ପାରିନାହିଁ ।

ହଏତ ମୁଁ ତମକୁ କିଛି କହିବାକୁ ଚାହେନା, କାରଣ ତମକୁ କହିବାର କିଛି ନାହିଁ ।

କିନ୍ତୁ ତଥାପି, ମୁଁ ତମକୁ ଆଜି ମୋର ଅତୀତ ଜୀବନର ଗୋଟିଏ କ୍ଷୁଦ୍ର କାହାଣୀ ଶୁଣେଇବି । ଏଇ ବହୁବର୍ଷର ଅଭିଜ୍ଞତା ଭିତର ଦେଇ ଦେଖିଲେ ମଧ ମୁଁ ବୁଝୁଛି ସେଦିନର ସେଇ କ୍ଷୁଦ୍ର ଉପକଥା ମୋର ଜୀବନକୁ ଅତ୍ୟନ୍ତ ଅବିଶ୍ୱାସ୍ୟ ଭାବରେ

ପ୍ରଭାବିତ କରି ଆସିଛି । ମୋର ଏଇ କଥାକୁ ରୂପକ ଭାବରେ ଗ୍ରହଣ କରି ତା' ଭିତରୁ ଅର୍ଥ-ଅର୍ଥାନ୍ତର ଖୋଜିବାକୁ ଚେଷ୍ଟାକରିବ ନାହିଁ ।

ସିଏ ମୋର ଶୈଶବର କଥା ।

ସେ' ସମୟରେ ବୋଧହୁଏ ତମେ ଆଣ୍ଟ୍ର ପର୍ଯ୍ୟନ୍ତ ପ୍ରକ୍ ପିଣ୍ଡି ଆଲ୍‌ଜେବ୍ରାର ମୌଳିକ ସୂତ୍ର ମୁଖସ୍ଥ କରୁଥିଲ । କିନ୍ତୁ ମୁଁ ସେତେବେଳେ ଦଶମ ଶ୍ରେଣୀରେ ଫୁଲପ୍ୟାଣ୍ଟ୍ ପିନ୍ଧି ଆଲ୍‌ଜେବ୍ରାରେ ଜିରୋ ରଖୁଥିବାରୁ ନିଲ୍‌ଡାଉନ୍ ହଉଥିଲି ।

ଘଟଣାଟା ଠିକ୍ ମନେ ନାହିଁ ।

ତେବେ କୌଣସି ଏକ ଅତ୍ୟନ୍ତ ହାସ୍ୟାସ୍ପଦ କାରଣରୁ ମୁଁ ଗୃହତ୍ୟାଗୀ ହବାକୁ ମନସ୍ଥ କରିନେଲି । ଶୂନ୍‌ଶାନ୍ ରାତିରେ କବାଟ ଖୋଲି ବାହାରକୁ ଆସିଲି ମୁଁ । ଏବେ ମଧ ମୁଁ ଯେମିତି ମୋ'ର ସେଇ ନିଃଶବ୍ଦ ପାଦଶବ୍ଦ ପର୍ଯ୍ୟନ୍ତ ଶୁଣିବାକୁ ପାଉଛି । ମୋତେ ଚାଲିଯିବାକୁ ଇ ହେବ । ଭୟ, ସାହସ, ବିରକ୍ତି, ଅସନ୍ତୋଷ ସବୁ ପ୍ରକାରର ଅନୁଭୂତି ମିଶି ଏକ ଅଦ୍ଭୁତ ମାନସିକ ଅବସ୍ଥା ତିଆରି ହୋଇଥିଲା ମୋର ।

ସିଧା ଷ୍ଟେସନ୍‌କୁ ଚାଲିଲି ।

ରାତିର ଅନ୍ଧକାରକୁ ଆହୁରି ରହସ୍ୟମୟୀ କରି ମାଡ୍ରାସମେଲ୍ ଆସି ଠିଆହେଲା । ଅନେକ ରାତି ହୋଇଗଲାଣି । ସମୟ ଜାଣିବାର ପ୍ରୟୋଜନ ନାହିଁ, ଯେ'କୌଣସି ଟ୍ରେନ୍‌ରେ ଯେ କୌଣସି ଦିଗକୁହିଁ ଗଲେ ଚଳିବ ।

ଟ୍ରେନ୍ ପ୍ରାୟ ଛାଡ଼ିବା ଉପରେ ।

କିଛି ଭାବି ନିଶ୍ଚୟ କରିବା ପୂର୍ବରୁ ମୁଁ ଗୋଟାଏ କମ୍ପାଟମେଣ୍ଟ୍ ଭିତରେ ଉଠି ଠିଆହୋଇ ସାରିଲିଣି । ମୋପରି ଗୋଟାଏ ଟିକଟ୍-ବିହୀନ ଯାତ୍ରୀପାଇଁ କ୍ଲାସ୍ ଜାଣିବାର ଦରକାର ନାହିଁ । ଯେ କୌଣସି କ୍ଲାସହେଲେ ଚଳିବ ।

ଟ୍ରେନ୍ ଚାଲିଛି ।

ବାହାରେ ଓ ଭିତରେ ସାନ୍ଦ୍ର ଅନ୍ଧକାର । ମୁହଁକୁ ମୁହଁ ଦେଖିବାର ଉପାୟ ନାହିଁ । ବାର୍ଥର ଗୋଟିଏ କଣରେ ବସିରହି କଣ ଯେ ଭାବୁଥିଲି ତା' ମୁଁ ଆଜି ଠିକ୍ ସ୍ମରଣ କରି ପାରୁନାହିଁ । ହଏତ ଘର କଥା ଭାବୁଥିଲି, ନହେଲେ ମୋର ଅନିର୍ଦ୍ଦିଷ୍ଟ ଗନ୍ତବ୍ୟ ସ୍ଥାନକଥା ।

ମୋର ଅଜାଣତରେ ସକାଳ ହୋଇ ଆସୁଛି । ସକାଳ ପୁଣି ଏତେ ସୁନ୍ଦର ଭାବରେ ହୁଏ କେବେ ! ଶେତା ଆଲୁଅ ଭିତର ଦେଇ ଟ୍ରେନ୍‌ଟା ଯେମିତି ଛୁଟି ଚାଲିଛି

ତୀରଗତିରେ, କିନ୍ତୁ ଏଇ ସୁନ୍ଦର ସକାଳ ଅପେକ୍ଷା ମତେ ଆହୁରି ଆଶ୍ଚର୍ଯ୍ୟ କଲା ମୋର ସୁନ୍ଦରତର ଆବିଷ୍କାର ।

ମୋରି ସାମ୍ନା ବାର୍ଥରେ ଜଣେ ତରୁଣୀ ବସିରହି ଠିକ୍ ମୋରିପରି ମୁଗ୍‌ଧ ଆଖିରେ ଚାହିଁ ରହିଛନ୍ତି ଏଇ ପ୍ରାୟ-ଆଗତ ସକାଳକୁ । ଆଜିର ଆଖିରେ ତାଙ୍କୁ ତରୁଣୀ କହୁଛି, କିନ୍ତୁ ସେତେବେଳେ ମୋର ମନେ ହୋଇଥିଲା ସେ' ମଧ ବୟସ୍କା । ବୟସ ତିରିଶ୍ ପାଖାପାଖି, ଦେଖିଲେ ହିଁ ଜାଣିହୁଏ ସାରାରାତି ଶୋଇପାରିନାହାନ୍ତି ସେ' । ଦୁଇଟି ସୁନ୍ଦର ଆଖିକୁ ଘେରି ଘେରି ଈଷତ୍ କଳାଦାଗ ବସିଯାଇଛି । ଅନେକ ଗୁଡ଼ାଏ ସାମ୍ପୁକରା ବାଳ ମୁହଁଟା ଉପରେ ଅଜାଡ଼ି ହୋଇ ପଡ଼ିଛନ୍ତି ଅଳିଆ ବୋଝପରି, ସେ' ଏକାଗ୍ର ଦୃଷ୍ଟିରେ ଚାହିଁ ରହିଛନ୍ତି ଝର୍କା ବାହାରକୁ ନିର୍ଲିପ୍ତ ନିସ୍ପନ୍ଦ ଭାବେ ।

ବାଥ୍‌ରୁମ୍‌ର କବାଟ ଖୋଲିବାର ଶବ୍ଦରେ ଫେରି ଚାହିଁଲି ମୁଁ । ତଉଲିଆରେ ମୁହଁ ପୋଛୁ ପୋଛୁ ଅତର୍କିତ ଭାବରେ ପଶି ଆସିଲେ ଜଣେ ଭଦ୍ରଲୋକ । ମୋ'ଉପରେ ତାଙ୍କର ଦୃଷ୍ଟି ପଡ଼ିବା ମାତ୍ରକେ ମୁହୂର୍ତ୍ତକ ପାଇଁ ଅବାକ୍ ହୋଇ ଚାହିଁ ରହିଲେ କେବଳ । ତାଙ୍କ ଆଖିର ଯଦି କଥା କହିବାର ଶକ୍ତି ଥାଆନ୍ତା ତା'ହେଲେ ବୋଧହୁଏ ସେ ତାଙ୍କର କାନ୍ଧରେ ସାମାନ୍ୟ 'ସ୍ରଗ' ଦେଇ କହିଥାଆନ୍ତେ, 'ହୁ ଦି ଡ଼େଭିଲ୍ ଦିଶ୍ ଅର୍ଚିନ୍ ଇଜ୍ ?' ତା'ପରେ ଭଦ୍ରଲୋକ ତାଙ୍କର କାନ୍ଧରେ ଝୁଲୁଥିବା ନାଇଟ୍ ଟ୍ରାଉଜର ଆଉ ଗାଉନ୍ ସବୁ ସୁଟ୍‌କେଶ୍‌ରେ ଥୋଉ ଥୋଉ କହିଲେ, 'ଗୁଡ୍‌ମର୍ଣ୍ଣିଙ୍ଗ୍ ଲିଲି ।'

ଭଦ୍ରମହିଳା ମୁହଁ ଫେରେଇଲେ ନାହିଁ- କେବଳ ଜବାବ୍ ଦେଲେ 'ଗୁଡ୍‌ମର୍ଣ୍ଣିଙ୍ଗ୍।'

ସକାଳର ଆଲୋକ ସ୍ରୋତ ଯେମିତି ଘୋଡ଼ାଉପରେ ସବାର୍ ହୋଇ ଛୁଟି ଆସୁଛି । ଟେଲିଗ୍ରାଫ୍ ତାର ଉପରର ଚଢେଇମାନେ ଟିକିଏ ଖରାପାଇଁ ସେମାନଙ୍କର ସଙ୍କୁଚିତ ପର ଗୁଡ଼ାକରୁ କୁହୁଡ଼ି ଝାଡି ଝାଡି ଢ଼ିଲା କରିବାରେ ଲାଗିଛନ୍ତି ।

ଟ୍ରେନ୍ ଡ଼ିଷ୍ଟାଣ୍ଟ୍ ସିଗ୍‌ନାଲ ପାଖରେ ଗତି କମେଇଲା ।

'ମୁଁ ଏଇଠି ଓହ୍ଲେଇ ଯିବି ଲିଲି ।' ଭଦ୍ରଲୋକ କହିଲେ ଇଂରାଜୀରେ, ଭଦ୍ରମହିଳା ମଧ ଇଂରାଜୀରେ ଜବାବ୍ ଦେଲେ, 'ମୁଁ ଖୁବ୍ ଦୁଃଖିତ ମୁଁ ତମ ସହିତ ଓହ୍ଲେଇ ଯାଇ ପାରୁନାହିଁ, ମତେ ବିଜୟ ନଗର ଯିବାକୁ ହବ ।'

ଟ୍ରେନ୍ ପ୍ଲାଟଫର୍ମକୁ ଇନ୍ କରୁଛି ।

'ତମର ଠିକଣାଟା'..... ଭଦ୍ରଲୋକ ଇତଃସ୍ତତଃ ହେଲେ ।

'ଠିକଣା ? ଦୁଷ୍ଟାମୀର ହସ ହସିଲେ ଭଦ୍ରମହିଳା । କହିଚିନା ଥରେ ମୁଁ ପ୍ରାୟ ହାଉଡ଼ା ୱେଟିଂ ରୁମ୍‌ରେ ମିଳିବି ।'

ଟ୍ରେନ୍ ପ୍ରାୟ ଛାଡ଼ିବା ଉପରେ ।

'ଆଚ୍ଛା ଲିଲି, ମୁଁ ଆସେ, ଥ୍ୟାଙ୍କ୍ ୟୁ ଫର୍ ଦି ଟାଇମ୍ ।'

ଭଦ୍ରଲୋକଟି ପାଶ୍ଚାତ୍ୟ କାଇଦାରେ ଝୁଙ୍କିପଡ଼ି ଲିଲିର ଗୋଟିଏ ପାପୁଲି ତାଙ୍କର ହାତ ଭିତରେ ଜଡ଼େଇ ଧରିଲେ ଅତି ଆଦରରେ ।

'ମୁଁ ତମକୁ ଅନେକଦିନ ମନେରଖିବି', ଭଦ୍ରଲୋକଙ୍କର କଣ୍ଠ ଆର୍ଦ୍ର । ଲିଲିର ପାପୁଲି ଚୁମ୍ବନ କରି ଭଦ୍ରଲୋକଟି ଓହ୍ଲେଇ ଗଲେ ପ୍ଲାଟ୍‌ଫର୍ମକୁ ।

ଭଦ୍ରଲୋକଙ୍କର ଯିବା ବାଟକୁ କିଛିସମୟ ଚାହିଁ ରହିଲେ ମହିଳାଟି । ତା'ପରେ ହଠାତ୍ ଅବାଧ ବାଳ ଗୁଡ଼ାକ ଗୋଟାଏ ଝାଙ୍କରେ ପଛକୁ ଛାଟିଦେଇ ମୁହଁ ଫେରାଇ ନେଲେ ସେ' ।

ମୁଁ ଏ ସମସ୍ତ ଘଟଣାର ଜଣେ ନୀରବ ଦର୍ଶକ ମାତ୍ର । ମୁଁ ବାର୍ଥକୁ ଆଉଜି ବସି ରହିଛି ପେଚ ଆଣ୍ଡିଲାପରି । ହୁଏତ ଟିକିଏ ଶୀତ ପଡ଼ିଚି । ଯଥାସମ୍ଭବ ନିଜକୁ ସଙ୍କୁଚିତ କରି ମୁଁ ନିଜକୁ ଆତ୍ମରକ୍ଷା ପାଇଁ ପ୍ରସ୍ତୁତ କରୁଛି ।

ଟ୍ରେନ୍ ଚାଲିଲା ।

ଭଦ୍ରମହିଳାଟି ମୋ'ଆଡ଼କୁ ଦୃଷ୍ଟି ଫେରାଇଲେ ଏତେବେଳକେ । ଦୁଇଟି ଭାବଲେଶଶୂନ୍ୟ ଆଖିରେ ସେ' ମୋତେ ସମୀକ୍ଷା କରୁଛନ୍ତି । ସେ' ଚାହାଣୀରେ କୌତୂହଳ, କରୁଣା, ସବୁ କିଛି ମିଶି ମିଶି ଏକ ଅପୂର୍ବ ମାଧୁରୀ ଫୁଟି ଉଠିଛି । ମୁଁ ଜାଣେନା ମୁଁ କିପରି ଦେଖା ଯାଉଥିଲି । ସେ ମହିଳାଙ୍କର ଆଖିନେଇ ମୁଁ ନିଜକୁ ଦେଖିବାପାଇଁ ଅନେକଥର କୌତୂହଳୀ ହୋଇଛି; କିନ୍ତୁ ପାରିନାହିଁ ।

ଗୋଟାଏ କଣରେ ଜାକିଜୁକି ହୋଇ ବସି ରହିଛି ଗୋଟାଏ ଅପରିଚିତ କିଶୋର ବାଳକ । ତା'ର କୁଞ୍ଚୁକୁଞ୍ଚିଆ ବାଳଗୁଡ଼ାକ ବୋଧହୁଏ ଅବାଧ ହେଇ ଉଠିଛନ୍ତି ଉପରକୁ । ନାକ ତଳେ କଅଁଳିଆ ନିଶ ଉଠି ଆସୁଛି । ଖଣ୍ଡେ ଚେକ୍ ହାଫ୍‌ସାର୍ଟ ଆଉ ମଣିବନ୍ଧରେ ଗୋଟାଏ ଶସ୍ତା ଘଣ୍ଟା ।

ନିରୁଦ୍‌ବେଗ ! ନିରୁଦ୍ଦେଶ !

'ତମେ କେତେବାଟ ଯିବ ?' ଭଦ୍ରମହିଳା ପ୍ରଶ୍ନ କଲେ । ଯାହାହଉ ଭଦ୍ରମହିଳା ଇଂରାଜୀ କାଇଦାରେ ପଚାରି ନାହାନ୍ତି 'ଗୋଇଂ ଫାର୍ ?' ତାହାହେଲେ କୁଆଡ଼େ ଉତ୍ତର ଦବା ଭଦ୍ରଲୋକଙ୍କୁ ଅଳ୍ପ କଥାରେ ଜବାବ ଦବାର ସୁଯୋଗ ଦିଆଯାଏ ।

'ୟେସ୍' ବା 'ନୋ'। ଏଇଟା ଗତବନ୍ଧା ଶିଷ୍ଟାଚାର। ଯାହାହଉ ଭଦ୍ରମହିଳା ଶିଷ୍ଟାଚାର ଅତିକ୍ରମ କରନ୍ତୁ ପଛକେ ଆତ୍ମୀୟତା ପ୍ରକାଶ କରିଛନ୍ତି। 'ତମେ କେତେବାଟ ଯିବ' ? ସେଇ ପଦକ କଥା ଏବେବି ମୋ'କାନରେ ବାଜେ ବୀଣା ପରି। ଘୋର ବର୍ଷା ଛାଡ଼ିଯିବା ପରେ ଦୂରରୁ ପାଣି ଗଡିବାର ଶବ୍ଦ ଶୁଣିଛ ତମେ ? ଚୈତ୍ରର ଉଷଳା ପବନରେ ଭଙ୍ଗା ଭଙ୍ଗା ବଇଁଶୀ ଶୁଣିଛ ତମେ ? ନୂଆ ନୂଆ ଚାଲି ଶିଖୁଥିବା ଶିଶୁର ସିଡ଼ିରେ ଓହ୍ଲେଇବାର ପାଦଶବ୍ଦ ଶୁଣିଚ ତମେ ?

ଠିକ ସେମତି ସହଜ, ନିରାଡମ୍ବର, ଆଉ ମିଠା।

ସେଇ ପଦକ କଥାରେ ଯେମିତି ମୋର ବହୁଦିନର ସଞ୍ଚିତ ଅଭିମାନର ବରଫସ୍ତୂପ ତରଳିବାକୁ ଆରମ୍ଭ କଲା ପ୍ରଚଣ୍ଡ ବେଗରେ। ମୁଁ ଯେମିତି ଏଇ ଭଦ୍ରମହିଳାଙ୍କୁ ଅନେକ ଦିନରୁ ଚିହ୍ନେ। ସେ ଯେମିତି ମୋର ଏକାନ୍ତ ଆତ୍ମୀୟ।

ସ୍ନେହ, ଆଦର, ଭଲପାଇବା କେବେ ଅସହ୍ୟ ହବାର ମୋର ମନେନାହିଁ। କିନ୍ତୁ ସେଦିନର ସେଇ ଅସହାୟ ମୁହୂର୍ତ୍ତର ଏଇ ପଦକ ଜିଜ୍ଞାସା ଯେମିତି ବର୍ଚ୍ଛା ପରି ବିନ୍ଧି ହୋଇଗଲା ମୋ' ଦେହରେ।

ମୁଁ ବୋଧହୁଏ କିଛି କହିନାହିଁ। ତଣ୍ଟିପାଖରେ କଣ ଗୋଟାଏ ଅଟକି ଗଲା। ଆଖି ବୋଧେ ଛଳଛଳ ହେଇ ଆସିଥିଲା।

ମୁଁ କଣ କହିଛି ବା ହୁଏତ ମୁଁ କିଛି କହିନାହିଁ। ସେହି ଆବେଗମୟ ମୁହୂର୍ତ୍ତଗୁଡ଼ିକର କିଛି କଥା ମୋର ଆଜି ମନେ ନାହିଁ। ଠିକ୍ ସେମିତି ଅମୀମାଂସିତ ଅବସ୍ଥାରେ କିଛି ସମୟ ଅତୀତ ହୋଇଯାଇଛି।

ଉର୍ଦ୍ଦିପିନ୍ଧା ଓ୍ୱେଟର୍ ଭଦ୍ରମହିଳାଙ୍କର ସାମ୍ନାରେ ସକାଳ ଚା'ର ସମସ୍ତ ଉପଚାର ରଖିଦେଇ ଗଲାଣି। ଭଦ୍ରମହିଳା ଆଦରର ହସ ହସି ମୋ'ପାଇଁ କିଛି ଚା' ତିଆରି କରୁଛନ୍ତି। ଚିନି ଚାମୁଚଟାକୁ ଉପରକୁ ଟେକି ଧରି ପଚାରିଲେ 'ଆଉ ଚିନି ଦେବି ?'

'ନୋ' ଥ୍ୟାଙ୍କ୍ସ', ମୁଁ କହିଲି।

ସେତେବେଳେ ମୁଁ ବୁଝିଲି ମୁଁ ନିଜକୁ ଫେରିପାଇଛି। ଭଦ୍ରମହିଳାଙ୍କର ପଶମର ଦାମୀ ସ୍କାର୍ଫଟାକୁ ଘୋଡ଼ିହୋଇ ତାଙ୍କର ସାମ୍ନାସାମ୍ନି ବସି ରହିଛି ମୁଁ। ମୁଁ ଯେମିତି ତାଙ୍କର ଜଣେ ସମସ୍କନ୍ଧ ସହଯାତ୍ରୀ !

ସକାଳର ପ୍ରଥମ ଖରା ତା'ର ଲମ୍ବା ଲମ୍ବା ଆଙ୍ଗୁଠି ବଢ଼େଇ ଫାଷ୍ଟକ୍ଲାସର ନୀଳ ରେକ୍ସିନ୍‌ର ଗଦି ଉପରେ ଚରିଯାଇଛି। ଭଦ୍ରମହିଳାଙ୍କର ପଳାସ-ଲୋହିତ ସ୍କାର୍ଫ ଉପରେ ମଧ୍ୟ ବିଛି ହୋଇଯାଇଛି ଆଞ୍ଜୁଳାଏ ଖରା। ସେଇ ପରିମିତ ସ୍ଥାନଟି

ଉପରେ ଯେମିତି ମେଞ୍ଚାଏ ନିଆଁ ଓଳାଡ଼ି ଦେଇଛି କିଏ । ଦୁଇଟି କ୍ଳାନ୍ତ ଭ୍ରୂଲତା ତଳେ ଚିରଚଞ୍ଚଳ ଦୁଇଟି ସ୍ନେହାଦ୍ର ଚକ୍ଷୁ ତାରକା ଢ଼ଳ ଢ଼ଳ କରୁଛି । ମୁହୂର୍ତ୍ତକରେ ମନେହେଲା ଯେମିତି ଏଇ ଭଦ୍ରମହିଳା ମୋର ବହୁଯୁଗ ଧରି ପରିଚିତା, ନିତାନ୍ତ ଆପଣାର ।

ଚାହା କପ୍‌ରେ ଚୁମୁକ୍ ଦେଲି । ଚମତ୍କାର ଚା । ଚା'କର୍ତ୍ତ୍ରୀ ଯେମିତି ତାଙ୍କର ଅମାୟିକ ବ୍ୟକ୍ତିତ୍ୱର କେଇ ଚାମୁଚ ଗୋଳି ଦେଇଛନ୍ତି ଚା'ରେ । ଏଇ ପରିବେଶ ଭିତରେ ମୋର ମନେହେଲା ଯେପରି ଆଉ ଅପେକ୍ଷା କରିବା ସମ୍ଭବ ନୁହଁ । ମନର ବୋଝ ହାଲୁକା କରିବାକୁ ମୁଁ ଗପିବାକୁ ଆରମ୍ଭ କରିଦେଇଛି ମୋର କ୍ଷୁଦ୍ର ଆଡ୍‌ଭେଞ୍ଚର୍‌ର ଆଦ୍ୟପ୍ରାନ୍ତ ।

ଭଦ୍ରମହିଳା ଆଦୌ ବିସ୍ମିତ ହେଲେନାହିଁ । ସେଣ୍ଟିମେଣ୍ଟାଲ୍ ଆଡ଼ୋଲେସେଣ୍ଟ୍ ମାନଙ୍କର ଆଦ୍ୟଯୌବନର ଏଇ ଅପରିପକ୍ୱ ବୈରାଗ୍ୟ ସହିତ ସେ' ଯେପରି ପୂର୍ବ-ପରିଚିତା । ଓଠରେ ସ୍ମିତହାସ୍ୟ ଖେଳାଇ କହିଲେ —

'ତମେ ଖୁବ୍ ପିଲା ଲୋକ । ଏଇ ସମୟରେ ଏମିତି ଅନେକ ଛୋଟ ଘଟଣା ମନେହୁଏ ଯେମିତି ଜୀବନର ସବୁକିଛି । ଆଉ ଟିକିଏ ବଡହେଲେ ଦେଖିବ ଏଗୁଡ଼ା ଅତି ତୁଚ୍ଛ, ଏକାବେଳକେ କିଛି ନୁହଁ । ତମକୁ ଏମିତି ଆହୁରି ଅନେକ ପରୀକ୍ଷାରେ ଫେଲ୍ ହବାକୁ ପଡ଼ିବ ।

ମୁଁ ଆଶା କରିଥିଲି ଭଦ୍ରମହିଳା ହଏତ ମତେ ଘରକୁ ଫେରିଯିବାକୁ କହିବେ । ନ ହେଲେ ହଏତ କହିପାରି ଥାଆନ୍ତେ ତାଙ୍କ ସାଙ୍ଗରେ ଯିବାକୁ । କିନ୍ତୁ ସେ' ଏଥିରୁ କୌଣସିଟା ନ କରି ଚା'ରେ ଦୁଧ ମିଶଉ ମିଶଉ ପଚାରିଲେ, ତମ ପାଖରେ କିଛି-ଟଙ୍କା ଅଛି ତ ? ଏମିତି ନୂଆ ନୂଆ ଖିଆଲ ପାଇଁ ତମର ହଏତ କିଛି ଟଙ୍କା ଦରକାର ପଡ଼ିପାରେ । ମୋର ଚିର -ଦରିଦ୍ର ପକେଟର ଦୁଇଟି ଟଙ୍କାର ଦାରିଦ୍ର୍ୟ ପ୍ରକାଶ କରିବା ଅପେକ୍ଷା ନୀରବ ରହିବା ଉଚିତ୍ ମନେକଲି ।

ଷ୍ଟେସନ୍ ପାଖ ହେଇ ଆସୁଛି । ଟ୍ରେନର ଗତି ମନ୍ଥର ହେଇଆସୁଛି । ସେ' ତାଙ୍କର ଭ୍ୟାନିଟି ବ୍ୟାଗରୁ ତିନିଖଣ୍ଡ ଦଶଟଙ୍କିଆ ନୋଟ୍ ମୋ ପାଖରେ ରଖିଦେଇ କହିଲେ, 'ମୁଁ ଏ ଟଙ୍କା ତମକୁ ଦାନ ଦେବି ନାହିଁ । ଆଇ ହେଟ୍ ଚ୍ୟାରିଟି । ଯା'କୁ ପାଇବା ପାଇଁ ତମକୁ ଆଉ ଗୋଟାଏ ପରୀକ୍ଷା ଭିତରଦେଇ ଯିବାକୁହେବ ।'

ମୁଁ କେବଳ ନୀରବରେ ଚାହିଁ ରହିଥାଏ ତାଙ୍କୁ ।

ତାଙ୍କର ତକିଆ ତଳୁ ମୁଠାଏ ତାସ୍ ବାହାର କରି ସେ ବାଣ୍ଟିଲେ ତିନିତିନି ପଟ କରି । ତା'ପରେ କହିଲେ, 'ତଳକୁ ମୁହଁକରି ପଡ଼ିଥିବା ଏଇ ତିନିପଟ ତାସ୍ ଉପରେ ତମର ଟଙ୍କା ପାଇବା ନ ପାଇବାଟା ନିର୍ଭର କରୁଛି । ତମେ ହଏତ ଏ ଖେଳର ନିୟମ ଜାଣନାହିଁ । କିନ୍ତୁ ମୁଁ ଜାଣେ ।

ଧୀରେ ଧୀରେ ଛ ଖଣ୍ଡଯାକ ତାସ ଚିତ୍ କଲେ ସେ' । ଆଜି ମଧ୍ୟ ମୋ'ର ସ୍ପଷ୍ଟ ମନେ ଅଛି ସେ' ତାସର ଚେହେରା ।

ତାଙ୍କ ପଟେ ଉଠିଛି ଠିକିରୀ ଟିକ୍କା, ନାଲିପାନ ଏଗାର, ଆଉ ଚିଡ଼ିଆ ନହିଲା ।

ମୋ ପଟେ ଉଠିଛି ଚିଡ଼ିଆ ଟିକ୍କା, ନାଲିପାନ ଟିକ୍କା ଆଉ ଇସ୍କାପାନ ତିନ୍ । 'Now you have earned your money' କହି ଦଶଟଙ୍କିଆ ନୋଟତକ ମୋ ପକେଟ୍‌ରେ ରଖିଦେଲେ ସେ ।

ମୁଁ ତଥାପି ନିର୍ବାକ୍ ।

ଟ୍ରେନ୍ ସାମାନ୍ୟ ଆନ୍ଦୋଳିତ ହୋଇ ପ୍ଲାଟ୍‌ଫର୍ମରେ ନିଶ୍ଚଳ ହୋଇ ଠିଆ ହେଲା । ଭଦ୍ରମହିଳା ତାଙ୍କର ଜିନିଷପତ୍ର ସଜାଡ଼ି ନଉ ନଉ କହିଲେ, 'ମୁଁ ଏଇ ଷ୍ଟେସନରେ ଓହ୍ଲେଇ ଯିବି । ଆଶାକରେ ତମର ଏଇ ଦୁଃସାହସିକ ଯାତ୍ରା ସଫଳ ହେବ । କିନ୍ତୁ ଗୋଟାଏ କଥା ଯେପରି ଭୁଲି ନ ଯାଅ ଯେ ଯାହା ଘଟିବାର ଥିବ ତା' ଘଟିବ ହିଁ ଘଟିବ । ତା'କୁ କେହି ଅନ୍ୟଥା କରିବା ସମ୍ଭବ ନୁହିଁ । ଜୀବନଟା ଗୋଟାଏ ମସ୍ତ ଜୁଆର ଆଡ୍‌ଡ଼ା, ଗ୍ୟାମ୍‌ଲ ଗ୍ୟାମ୍‌ଲ ଆଣ୍ଡ୍ ଗ୍ୟାମ୍‌ଲ ।

ଭଦ୍ରମହିଳା ଓହ୍ଲେଇ ଗଲେ ।

ଗଲାବେଳେ ହୁଏତ ଇଚ୍ଛା କରି ସେ ତାଙ୍କର ସ୍କାର୍ଫଟାକୁ ଛାଡ଼ି ଦେଇଗଲେ । ମୋର ଏବେ ମଧ୍ୟ ମନେହୁଏ ମୁଁ ତାଙ୍କର ସେଇ ସ୍କାର୍ଫଯାକୁ ଘୋଡ଼ି ହେଇ ସାରା ଜୀବନ ବୁଲୁଛି । ସ୍କାର୍ଫତ ନୁହଁ, ରକ୍ଷା କବଚ ।

ସେହିଦିନ ଅପେକ୍ଷା ମୁଁ ଆଜି ଜୀବନକୁ ଆଉ ପନ୍ଦର ବର୍ଷ ଅଧିକା ବୁଝିଲିଣି । ସେ ଦିନ ପ୍ରଭାତର ପ୍ରଥମ ଆଲୋକ ସହିତ ଭଦ୍ରମହିଳାଙ୍କର ପାଦତଳେ ମୁଁ ଯେଉଁ ନିଷ୍ଠୁର ସତ୍ୟର ଶିକ୍ଷା ପାଇଥିଲି, ତାକୁ ମୁଁ ଜୀବନରେ ମୁହୂର୍ମୁହୂ ପ୍ରତ୍ୟକ୍ଷ କରୁଚି ।

ମୋ ଦେଶରେ ଜୁଆ ଖେଳିବାଟା କୁଆଡ଼େ ବେଆଇନ୍ ।

କିନ୍ତୁ କଲିକତା ଘୋଡ଼ାଦୌଡ଼ଟା ସମ୍ପୂର୍ଣ୍ଣ ଆଇନ ସଙ୍ଗତ । କଟକରେ ଥାଇ ଯୁଦ୍ଧର ସୂଚନା ପାଇ ଭାଇଜାଗାପଟ୍ଟମରୁ ୱାଗନ୍ ଡ଼ାଲ୍‌ଚିନି କିଣି ଫୋନ୍ ଉପରେ ହଜାର ହଜାର ଟଙ୍କାର ମୁନାଫା ଉଠାଇବାଟା ଆଇନ ସଙ୍ଗତ । ସ୍ପେକୁଲେଶନ ହଉଛି ଜୁଆର ଗୋଟାଏ ସଂଶୋଧିତ, ଭଦ୍ର ନାମକରଣ ।

ଜ୍ୟୋତିଷ ପାପୁଲିର ରେଖାରୁ ଗ୍ରହ ଉପଗ୍ରହର ଗତିବିଧି ସ୍ପେକୁଲେଟ୍ କରିପାରେ, ଆସେମ୍ଲି ପ୍ରାର୍ଥୀ ଲିଫ୍‌ଲେଟ୍ ବାଣ୍ଟି ଆଉ ମାଇକ୍ରୋଫୋନ୍‌ରେ ପ୍ରଚାର

କରି କନ୍‌ଷ୍ଟିଟୁଏନ୍‌ସିର ଗତିବିଧି କେଲକୁଲେଟ୍ କରିପାରେ, ଲବିରେ ବସି ଚା' ଖାଇ ଖାଇ ଜଣେ ସ୍ୱାଧୀନ ସଭ୍ୟ କ୍ୟାବିନେଟକୁ ଯିବାର କେଲକୁଲେଶନ କରିପାରେ, ଅଥଚ ଜଣେ ଚିନିପଟ ତାସର ନିରୀହ ଚେହେରା କେଲକୁଲେଟ୍ କରିବାକୁ ଗଲେ ବେବ ଅଶୁଦ୍ଧ ହୋଇଯାଏ ।

ଆଉ ଠିକ୍ ଯାହା ମଣିଷ ଆଖିରେ ଦେଖିପାରିବା ସମ୍ଭବ ନୁହଁ ତାକୁଇ ତ କୁହାଯାଏ 'ଅଦୃଷ୍ଟ' । ସ୍ୱୀକାର କରିବାକୁ ହବ ମଣିଷ ପାଇଁ ଦୃଷ୍ଟ ଅପେକ୍ଷା ଅଦୃଷ୍ଟର ସୀମାରେଖା ଅନେକ ବେଶୀ ।

ମୁଁ ଆଜି ଜୀବନରେ ତିଳ ତିଳ କରି ସେଇ ଗୋଟାଏ କଥା ପ୍ରତ୍ୟକ୍ଷ କରୁଛି । ମୁଁ କେତେ ସୀମିତ, ମୁଁ କେତେ ଅସହାୟ ।

ଆଉ ଠିକ୍ ସେଇଥିପାଇଁ (ବିଟୁଇନ୍ ୟୁ, ମି, ଆଣ୍ଡ୍ ଦି ଲ୍ୟାମ୍ପ ପୋଷ୍ଟ) ମୁଁ ଜୁଆ ଖେଳେ ।

ସେଇ ତରୁଣ ବିମାନଚାଳକଟିର କଥା ଭାବ ଯେ ଗୋଟାଏ ସୁନ୍ଦର ସୂର୍ଯ୍ୟୋଦୟ ସକାଳରେ ତା'ର ଉଡାଜାହାଜ ନେଇ ଆକାଶକୁ ଉଠିଥିଲା, ଆଉ ଫେରିଲା ନାହିଁ । ଆଉ ସେଇ ପୁଣ୍ୟକାଙ୍କ୍ଷୀ ତୀର୍ଥଯାତ୍ରୀ ବିଧବାଟିର କଥା ଭାବ ଯେ ଇଞ୍ଜିନ୍‌ର ପାଖ ଡବାରେ ବସି ରହି ହାଇ ମାରୁଥିଲା, ନ ହେଲେ ସେଇ ଆଇସ୍‌କ୍ରିମ୍‌ୱାଲାଟିର କଥା ଭାବ ଯିଏ ନାଇଟ୍ ମେଲ୍‌ରେ ନିଶ୍ଚିନ୍ତ ନିଦ୍ରା ଗଲାବେଳେ ତା'ର ଲଟେରୀ ଟିକଟ୍‌ର ଘୋଡ଼ା ଡର୍ବିର ପଡ଼ିଆରେ ନିଜର ଜୀବନକୁ ତୁଚ୍ଛ କରି ଦୌଡ଼ି ଦୌଡ଼ି ଫାଷ୍ଟ ହେଲା । ଗୁଡ଼ି ଉଡଉ ଉଡଉ ଇଲେକ୍‌ଟ୍ରିସିଟି, ପୁରୁଣା ଜୋତାର ଫିମ୍ପିରୁ ପେନିସିଲିନି, ଟେନିସ୍ ପଡ଼ିଆରୁ ଜାପାନ୍‌ର ସାମ୍ରାଜ୍ଞୀ, ଶତାବ୍ଦୀବ୍ୟାପୀସୁପ୍ତ ମହେଞ୍ଜୋଦାରୋ, ହରପ୍ପା ଉପରକୁ ଆସିବା ବେଳେ ବ୍ରହ୍ମପୁତ୍ର ଡିବ୍ରୁଗଡ଼କୁ ଚାଟି ନେଲା ବିସ୍ମୃତିର ଅତଳ ଗହ୍ୱରକୁ ।

ଆହୁରି ତଳକୁ ଆସ ।

ସେଇ ଯେଉଁ ପିଲା ଅଙ୍କରେ ୨୯ ରଖି ଫେଲ ହେଲା ଆଉ ଯିଏ ୩୦ ରଖି ପାଶ୍ କରିଗଲା । ଏଇଟା କଣ ପ୍ରତିଭା ଆଉ ବୁଦ୍ଧିହୀନତାର ପାର୍ଥକ୍ୟ । ପରିଶ୍ରମ ଆଉ ଆଳସ୍ୟର ପାର୍ଥକ୍ୟ ? କେତେଥର କେତେଲୋକଙ୍କୁ ତମେ କହିବାର ନ ଶୁଣିଛ,

'ମୁଁ ସେ' ବାଟରେ ଯାଉ ନ ଥିଲି ଟି ..

'ଆଉ ଯଦି ଟିକକ ଆଗରୁ ମୁଁ ଚିଠିଟା ପଢି ଥାଆନ୍ତି...

'ଆହା ! ଚିଠିଟା ଯଦି ମୁଁ ପୋଷ୍ଟ ନ କରି ଥାଆନ୍ତି ନାଁ....

'ମୁଁ କେବେ ଚାହା ଖାଏନି ଅଥବ ସେଦିନ ଦେଖ ମୁଁ ଚା' ଖାଇଛି...

'ସବୁଦିନେ ବନ୍ଧୁକରୁ ଗୁଳି କାଢି ରଖେ ଅଥଚ... ଦୃଷ୍ଟାନ୍ତର ସଂଖ୍ୟା ନାହିଁ ।

ତମରି ନିଜ କଥା ଭାବନା । ତମେ ନିଶ୍ଚୟ ସ୍ୱୀକାର କରିବ ଯେ ତମେ ଆଜି ଯାହା ବା ଆଜି ଯେଉଁ ଅବସ୍ଥାରେ ସେଥିପାଇଁ ତମ ନିଜ ଅପେକ୍ଷା ତମର କ୍ଷମତାର ପରିସର ବାହାରେ ଥିବା ଘଟଣାହିଁ ଅନେକ ବେଶି ଦାୟୀ । ଯେଉଁମାନେ ଇତିହାସ ସୃଷ୍ଟି କଲେ ବୋଲି ଭାବନ୍ତି ବା ଆମେ ମନେକରୁଁ, ଟିକିଏ ଚିନ୍ତା କଲେ ଦେଖି ହେବ ଇତିହାସ ତା'ର କୂଳପ୍ଲାବୀ ବନ୍ୟାରେ ସେମାନଙ୍କୁ ଭସେଇ ଆଣି ଠିକ୍ ସେହି ଜାଗାରେ ହିଁ ରଖିଦେଇ ଯାଇଛି ।

ଖାଲି ତମେ କାହିଁକି, ଅନେକ କହନ୍ତି ଯାକୁ 'ଚାନ୍‌ସ' । କିନ୍ତୁ 'ଚାନ୍‌ସ'ର ଓଡ଼ିଆ କଣ ? ତା'ର ଅର୍ଥ କଣ ? ଚାନ୍‌ସର ଏକମାତ୍ର ଅର୍ଥ ଯାହା ଘଟିଗଲା ତା' ହଏତ ଘଟି ନ ପାରି ଥାଆନ୍ତା । ଆଉ ଠିକ୍ ସେଇଟାହିଁ ହଉଛି ଭବିତବ୍ୟ, ଅବଶ୍ୟମ୍ଭାବୀ, ଇନ୍‌ଏଭିଟେବେଲ୍ ।

ସେଇଥିପାଇଁ ତ ଜ୍ୟୋତିଷୀ-ବିଶାରଦ ଗାଣିତିକ ଓମାର୍ ତାଙ୍କର ଜୀବନବ୍ୟାପୀ ସାଧନା ପରେ ଲେଖିଥିଲେ —

> The Moving Finger writes; and having writ,
> Moves on: nor all thy Piety nor Wit,
> Shall lure it back to cancel half a line,
> Nor all thy Tears, wash out a word of it.

ଜୁଆର ଅର୍ଥ ସେହି ଅପରିହାର୍ଯ୍ୟ, ଅଦୃଶ୍ୟ ଇଙ୍ଗିତକୁ ନମ୍ରତାର ସହିତ ସ୍ୱୀକାର କରିବା । କହିବା, ମୁଁ ଜାଣେନାଁ, 'ହୋଇପାରେ, ହଏତ .... ଇତ୍ୟାଦି । ଆମେ ଚାହୁଁ ବା ନ ଚାହୁଁ, ସ୍ୱୀକାର କରୁ ବା ନ କରୁ ଆମର ପ୍ରତ୍ୟେକର ଜୀବନ ଏମିତି ଅନେକ ଗୁଡାଏ ହୋଇପାରେ, ହଏତ ବୋଧହୁଏ ର ପାରସ୍ପରିକ ଘାତ ପ୍ରତିଘାତର ରେଜଲ୍‌ଟାଣ୍ଟ୍ ଶକ୍ତି । ତାକୁ ନମ୍ରତାର ସହିତ ସ୍ୱୀକାର କର ।

ମୋର ଆଜି ମନେହଉଛି ଯେମିତି ଆକାଶର ସବୁଗୁଡ଼ାକ ତାରା ଲିଭିଗଲେ ଏକାଥରକରେ । ଦିଗର ପରାଇ ମିଳେନା । ମଙ୍ଗ ଛାଡ଼ିଦେଇ ମୁଁ ଚୁପ୍‌ଚାପ୍ ହୋଇ ବସି ରହିଛି କେବଳ ସେଇ ଅଦୃଶ୍ୟ ହାତର ଇଙ୍ଗିତକୁ ଅପେକ୍ଷା କରି । ଭଦ୍ରମହିଳାଙ୍କର ସେଇ ସ୍ମାର୍ଫ ହଏତ କେବେ ଉଠିବ ଚକ୍ରବାଳରେ ଧ୍ରୁବତାରା ପରି, କେବେ ହଏତ ମୋର ପାଲରେ ଆସି ଲାଗିବ ସୌଭାଗ୍ୟର ମୌସୁମୀ....

ଏ ନିସ୍ତବ୍ଧତା ଅସହ୍ୟ ! ତଥାପି କେବେ କେବେ ଗୋଟାଏ ଅସହ୍ୟ ଯନ୍ତ୍ରଣାରେ ଛଟପଟ୍ କରି ମୁଁ ଆକାଶକୁ ବଦ୍ଧମୁଷ୍ଟି ଉତ୍ତୋଳନ କରି ଚିତ୍କାର କରେ 'ଆଲୋକ-ଆଲୋକ ଦିଅ' । ମୋରି କଣ୍ଠସ୍ୱର ମୋରି ପାଖକୁ ଫେରି ଆସୁଛି ପ୍ରତିଧ୍ୱନି ଛଳରେ, 'ଆଲୋକ ନାହିଁ, ତମକୁ ବାଟ ଦେଖାଇବାକୁ କେବଳ ଅଛି Blind understanding..... 'ଆଜିର ଏଇ ମୁହୂର୍ତ୍ତରେ ମୋ'ର ସ୍ମରଣ ଆସୁଛି ସେଇ କେତେପଦ କଥା -'ଜୀବନଟା ଗୋଟାଏ ମସ୍ତ ଜୁଆର ଆଡ୍‌ଡା ଗ୍ୟାମ୍ବଲ୍ ଗ୍ୟାମ୍ବଲ୍ ଆଣ୍ଡ୍ ଗ୍ୟାମ୍ବଲ୍ ।'

ଆଜି ମୋର ନୌକାର ସମସ୍ତ ସହଯାତ୍ରୀଙ୍କୁ ନେଇ ଜୀବନର ଶେଷ ଖେଳ ମୁଁ ଖେଳିବି । ହଏତ ମୋର ଡଙ୍ଗା ଆଉ ମୋର ସମସ୍ତ ବଦ୍‌ନାମର ବିନିମୟରେ ମୁଁ କିଣିବି ସେଇ ଏସପ୍ ଫେବ୍‌ଲ୍ ପ୍ରସିଦ୍ଧ ଖଣ୍ଡେ କୁରାଢ଼ି । ଆଉ ସେଇ କୁରାଢ଼ିରେ ମୋର ମାସ୍ତୁଲକୁ କାଟୁ କାଟୁ ମୁଁ ତାକୁ ପାଣିକି ପକେଇ ଦେଇ କେବଳ ଅପେକ୍ଷା କରି ରହିବି, କେତେବେଳେ ଜଳଦେବତା ପାଣିରୁ ସୁନାର କୁରାଢ଼ି ଧରି ଉଠିବେ, ଆଉ ମୋତେ ପଚାରିବେ 'ଏଇଟା କଣ ତମର କୁରାଢ଼ି ?'

ମୁଁ କଣ କହିବି ମୁଁ ଜାଣେ ନାଁ.... ମୋ'ର ଶୁଭେଚ୍ଛା ନବ ।

ତମର ଶୁଭାନୁଧାୟୀ

ମୁଁ

# ନବମୀ

ନଭେମ୍ବର
ମୋ' ନିଜଘର

ସୁଜାତା,

ମୁଁ ନିଦରୁ ଉଠି ନ ଥିଲି । ଟେଲିଫୋନ୍ ବାଜିଲା ଏବଂ ସେଥିରେ ରୋଜାଲିଣ୍ଡ୍ ସେହି ଅବିଶ୍ୱାସ୍ୟ ଅଥଚ ବହୁ ପ୍ରତୀକ୍ଷିତ ସମ୍ବାଦ ଦେଲା ଯେ ତମେ ଆଜି ମୋ' ଘରକୁ ଆସିବାକୁ ମନସ୍ଥ କରିଛ । ମୁଁ ଯଦି ଶୁଣିଥାନ୍ତି ଯେ ରିଚାର୍ଡ ନିକ୍ସନ ଓ ମାଓସେତୁଂ ଓ୍ୱାର୍‌ସଠାରେ ହାଲ୍ ଫେଇ ମାରିଥିବା ଆପୋଷ ଆଲୋଚନାକୁ ମୋ'ରି ଘରେ କରିବାକୁ ସ୍ଥିରନିଶ୍ଚୟ କରିଛନ୍ତି ତାହାହେଲେ ମୁଁ କମ୍ ଆଶ୍ଚର୍ଯ୍ୟ ହୋଇ ଥାଆନ୍ତି; କିନ୍ତୁ ରୋଜାଲିଣ୍ଡ୍ ତ ମୋ ସହିତ ଏପରି ପ୍ରାକ୍‌ଟିକାଲ୍ ଜୋକ୍ କରେ ନା ! ତାହାହେଲେ ସତରେ ତମେ କ'ଣ ଆସୁଚ ?



ମୋ ଆଗରେ ଅନେକ କାମ । ସକାଳର ପ୍ରଥମ ଖରା ଆସିବାକୁ ଡେରି ଅଛି । ନଭେମ୍ବରର ଶୀତ ଗୋଟାଏ ଛୋଟ ଚଢ଼େଇ ପରି ମୋର କମ୍ବଳ ଭିତରେ ତଥାପି ଥରୁଛି, କିନ୍ତୁ ତମେ ତ ଆସୁଚ । ଗୋଟାଏ ଝାଙ୍କରେ ଅନେକ ଓଜନ ଧରି ମାଡ଼ି ବସିଥିବା କମ୍ବଳଟାକୁ ଦେହ ଉପରୁ ଫୋପାଡ଼ି ଦେଇ ଚିତ୍କାର କରି ଚା' କରିବାକୁ, ଗେଜାର୍ ଚଳେଇବାକୁ ଓ ମୋର କ୍ଷୌର-ସାମଗ୍ରୀ ପ୍ରସ୍ତୁତ କରିବାକୁ ।

ମୁଁ ଯନ୍ତଚାଳକ ପରି ମୋର ଆପାତଃ ପୌଢ଼ ମୁହଁ ଉପରେ ବ୍ଲେଡ୍‌ଟାକୁ କ୍ଷିପ୍ର ଗତିରେ ଟାଣୁଚି ଓ ସାମାନ୍ୟ ବିରତିର ସୁଯୋଗ ନେଇ ଚା' କପଟାକୁ ଓଠ ପାଖକୁ ନଉଚି ଓ ତଳକୁ ଆଣୁଚି; କିନ୍ତୁ ମୁଁ ମନେ ମନେ ଭାବୁଚି ତମେ ବ୍ରେକ୍‌ଫାଷ୍ଟରେ କ'ଣ ଖାଇବାକୁ ପସନ୍ଦ କରିବ !

ପରିଜ୍ ଡ ଦେବି, ତେବେ ଓଟ୍ ନାଁ କର୍ଣ୍ଣ ଫ୍ଳେକ୍ ? ବ୍ରେଡ୍ ସ୍ଲାଇସ୍ ଆଜ-ଇଟ୍ ଇଜ୍ ନାଁ ଟୋଷ୍ଟେଡ୍ ? ଭଲ ହୁଅନ୍ତା ଟିକିଏ ତଟ୍‌କା ବଟର ମିଳିପାରିଲେ । ଫ୍ରିଜ୍‌ର ବଟର୍ ଗୁଡ଼ାକ ଶକ୍ତ ଟେନିସ୍ ବଲ ପରି ହୋଇ ଯାଇଥିବ । କୋଲଡ୍ ମିଟ୍ ଚଳିବ ନାହିଁ ବରଂ ଏଗ୍ ଫ୍ରାଇ । ସସେଜ୍‌ତ ଅଖାଦ୍ୟ, ଜାମ୍ ନାଁ ଜେଲି ! ଇତ୍ୟାଦି ମୋର ବ୍ରେକ୍‌ଫାଷ୍ଟର ଡ଼ିକ୍‌ସିନାରୀରେ ଥିବା ଏଇ କେତୋଟି ଆଇଟମ୍‌କୁ ବିଭିନ୍ନଭାବରେ ପର୍ମ୍ୟୁଟେସନ୍ ଓ କମ୍ବିନେସନ୍ ସୂତ୍ରରେ ଏପଟ ସେପଟ କରିବାକୁ ଲାଗିଲି ଏବଂ ଏଇ ସୁଯୋଗରେ ପ୍ରଥମଥର ପାଇଁ ବୁଝିଲି ଯେ ଖାଦ୍ୟ ପଦାର୍ଥର ଗରିଷ୍ଠ ସାଧାରଣ ଗୁଣିତକ କାଢ଼ିବା ଗାଣିତିକମାନଙ୍କ ପକ୍ଷରେ ମଧ୍ୟ ସମ୍ଭବ ନୁହଁ । ଇତିମଧ୍ୟରେ ମୋର ମୁହଁ ଉପରୁ କୁହୁଡ଼ି ରଙ୍ଗର ଦାଢି ସବୁ ଉଭେଇ ଗଲାଣି ଓ ସକାଳର 'ଇମିଡ଼ିଏଟ୍‌ଲି-ଅଫ୍‌ଟର-ବେଡ୍ ଟି' ଖିଆ ସମାପ୍ତ ହେଲାଣି । ଶେଷ ପର୍ଯ୍ୟନ୍ତ କ'ଣ ଗୋଟାଏ ମେନୁ ଠିକଣା କରି ବରାଦ୍ ଦେଲି ଠିକ ଆଠଟା ପନ୍ଦର ମିନିଟ୍‌ରେ ପ୍ରସ୍ତୁତ ରଖିବାକୁ ।

ତା'ପରେ ବାଥରୁମ୍‌ର ସାୱାର୍ ତଳେ ଠିଆ ହୋଇ ରହି ମୁଁ ଭାବୁଥିଲି । ଏତେ ଶୀତରେ ମଧ୍ୟ ମନେ ହୋଇଥିଲା ଯେମିତି ପାଣିର ଫୁଆରା ସବୁ ଛୋଟ ଛୋଟ କାଗଜଫୁଲ ପରି ଏକ ଅବିଶ୍ରାନ୍ତ ଧାରାରେ ମୋର ଦେହ ଛୁଇଁ ତଳକୁ ଗଡ଼ି ଯାଉଛନ୍ତି । ହଁ ମୁଁ ଭାବୁଥିଲି ତମେ ଆସିଲେ କେଉଁଠି ବସିବ ? ମୁଁ ନିଶ୍ଚୟ ଚାହେଁ ଯେ ତମେ ଖୁବ୍ ସ୍ୱାଚ୍ଛନ୍ଦ୍ୟର ସହିତ ବସିବ । ଯଥେଷ୍ଟ ଲେଗ୍-ସ୍ପେସ୍ ଥିବ ଓ ଜାଗାଟାର ପରିମିତି ତମର ଦେହର ଭୂଗୋଳକୁ ସଂପୂର୍ଣ୍ଣ ଭାବରେ ଗ୍ରାସ କରି ପାରୁଥିବ । କିନ୍ତୁ, ମୁଁ ଖୁବ୍ ସତର୍କ ଯେପରି ତମେ ଅନେକ ବେଶି ପଛକୁ ଆଉଜି ପାରିବାର ସୁଯୋଗ ନ ପାଅ । ସେପରି ଏକ ଭଙ୍ଗୀରେ କେଜାଣି କାହିଁକି ତମେ ଖୁବ୍ ଉଦ୍ଧତ ମନେହୁଅ । ତମର ପୃଷ୍ଠଭୂମିରେ ଗୋଟାଏ ବିସ୍ତୃତ ଲାଜକୁଳୀ-ଲତା-ଫୁଲ ରଙ୍ଗର କାନ୍ଥ ଛଡ଼ା ଆଉ କିଛି ରହିବା ଉଚିତ ନୁହଁ, କାରଣ ମୁଁ ତୁମର ବିପରୀତ ଦିଗରେ ବସି ବେଳେ ବେଳେ କଳ୍ପନା-ବିଳାସ କରି ପାରିବି ଯେ ତୁମେ ଈଷଦ୍ ଗୋଲାପୀରଙ୍ଗର ଫ୍ରେମରେ ବନ୍ଧା ଏକ ସୁନ୍ଦର ଛବି ଯାହାକୁ ଏ ଯାଗାରୁ କେହି ସ୍ଥାନାନ୍ତରିତ କରିପାରିବେ ନାହିଁ ।

ଆମେ ଯଦିଓ ବସିଥିବା ସାମ୍ନାସାମ୍ନି ଭିସ୍-ଆ-ଭିସ୍ ଅତ୍ୟନ୍ତ ସାଧାରଣ ଭାବରେ, ଆମର ମାନସିକ ଅବସ୍ଥାଟା ଥିବ ପ୍ରକୃତରେ ଆମୋଦକର । ଆମେ ବସିଥିବା ଲୌକିକତା ଓ ଆନ୍ତରିକତାର ଏକ ନାତିପ୍ରଶସ୍ତ ସୀମାରେଖା ଉପରେ । ଆମର ପଛକୁ — ଅନେକ ପଛକୁ ଲମ୍ବି ଲମ୍ବି ଯାଇଛି ସ୍ମୃତିର ଏକ ଧୂସର କାର୍ପେଟ୍ ଯାହାର ଶେଷ ହୁଏତ ହେଇଛି ଆମର ଅବଚେତନ ସମୁଦ୍ରର କେଉଁ ଏକ ପ୍ରବାଳ ଦ୍ୱୀପରେ, ଆଉ ଆମ ଆଗରେ ସେଇ ଦୁଷ୍ପ୍ରାପ୍ୟ ସୁନାର ହରିଣୀ ଯାହାର ଶିଙ୍ଗରେ ହୀରା, ନୀଳା, ମୋତି ମାଣିକ୍ୟର ସମ୍ଭାର । ଯାହାର ଲଲାଟରେ ସୂର୍ଯ୍ୟକାନ୍ତ ମଣି ଓ

ଯାହାର ପାଦରେ ବୈଦୂର୍ଯ୍ୟ । ଯିଏ ଏକାଧାରରେ ଧାତବ ଫ୍ରେସ୍କୋ ପରି ସ୍ଥାବର ଓ ପ୍ରାଣ ପରି ଚଞ୍ଚଳ । ଯାହା ସେଇ ଆଦିମ ଯୁଗରୁ ଆଜି ପର୍ଯ୍ୟନ୍ତ ମିଳିନାହିଁ ଅଥଚ ପ୍ରତିକ୍ଷଣ ଏଇ ମିଳିବାର ଏକ ମଧୁର ସମ୍ଭାବନାରେ ଗର୍ଭବତୀ । ଟିକିଏ କବି କବି ଲାଗିଲା ନାଁ ? କିନ୍ତୁ ମୋର ନିଜସ୍ୱ ଷ୍ଟ୍ରିମ୍ ଲାଇନ୍‌ଡ଼୍ ଉପମାରେ ମୁଁ କହନ୍ତି — ଆମ ଆଗରେ ସେଇ ଦୁଷ୍ପ୍ରାପ୍ୟ ବସ୍ତୁ, ଯିଏ ଗୋଟାଏ ଦ୍ରୁତଗାମୀ କାର୍ ବନେଟ୍‌ର ମଧ୍ୟବିନ୍ଦୁ ପରି ସବୁବେଳେ ଆରୋହୀ ଆଗେ ଆଗେ ତା'ର ଅକ୍ଷମତାକୁ ଉପହାସ କରି ଚାଲିଥାଏ ।

ଛାଡ଼ ! ମୋଟ ଉପରେ ଏଇ ହେଲା ଆମର ମନର ଚୌହଦି ।

କାଗଜର ଫୁଲ ଝରି ଚାଲିଚି ।<br>କେତେ ସମୟ ଗଲାଣି କିଏ ଜାଣେ ?<br>ବାଥରୁମ୍‌ରୁ ବାହାରିବାକୁ ପଡ଼ିବ ।

ପୋଷାକ ପିନ୍ଧିବାଟା ମୋଟେଇ ସମସ୍ୟା ନୁହଁ । ଖଣ୍ଡେ ଧୂସର ଟ୍ରାଉଜର, ଖଣ୍ଡେ ଏଣ୍ଡି ରଙ୍ଗର ଖୋଲା ହାୱାଇ ଆଉ କୋହ୍ଲାପୁରୀ ଚଟି । ହାଲୁକା ଇନ୍‌ଫର୍ମାଲ୍ ରଙ୍ଗ ମଧ୍ୟ ଆଖିକୁ ଲାଗେନାଁ ।

ବ୍ରେକ୍‌ଫାଷ୍ଟ ପାଇଁ ଟେବୁଲ୍ ପ୍ରସ୍ତୁତ୍ ହଉଚି । ଇତିମଧ୍ୟରେ କପେ କଫି ଖାଇଲେ ଦେହର ସାଧାରଣ ଉତ୍ତାପ ଫେରିଆସନ୍ତା । କଫି ଖାଇ ଲନ୍‌କୁ ଯିବି । ତମେ ବୋଧହୁଏ ମୋର ଲନ୍ ଦେଖିନାହଁ । ଖୁବ୍ ଛୋଟ । ଚାରିକୋଣିଆ- କିନ୍ତୁ ସୁନ୍ଦର !

ଚାରିପଟ ନିଖୁଁଣଭାବରେ ଟ୍ରିମ୍ କରାଯାଇଚି । ଉଡାଜାହାଜରୁ ଦେଖିଲେ ମନେ ହେବ କୌଣସି ଜୁଆଖେଳର ଆଡ୍‌ଡାରୁ ଛିଟ୍‌କି ଆସି ପଡ଼ିଚି ପଟେ ନେଳୀ— ଖୁବ୍ ନେଳୀ ତାସ୍ । ଆଉ ପାଖରେ ଦେଖିଲେ ଭାବିବ କେଉଁ ଦେଶର ମେଣ୍ଢାର ପଶମରେ ତିଆରି ଏଇ କାର୍ପେଟ୍ ? କାଇଁ ନୀଳ ନଦୀର ଉପତ୍ୟକାରେ ନୀଳ ମେଷ କଥା ତ ମୁଁ କେବେ ଶୁଣିନାହିଁ କି ଦେଖି ନାହିଁ ? ମୋର ଏ ଲନ୍‌କୁ ମୁଁ ଦିନ ଦିନ ଧରି ଈର୍ଷାର ଗରଳରେ ଶ୍ୟାମଳ କରିଚି । ସେ କଥା ହୁଏତ ତମେ ଜାଣନାଁ ।

କିନ୍ତୁ ମୁଁ ଲନ୍‌କୁ ଆସିଥିଲି କିଛି ଫୁଲ ଓ ପତ୍ର ଯୋଗାଡ଼ କରିବାକୁ । ବସିବା ଘର ଓ ଡ଼ାଇନିଂ ଟେବୁଲର ଦୁଇଟି ଶୂନ୍ୟଗର୍ଭା ଫ୍ଲାୱାର୍ ଭାଜ୍‌କୁ ଆଜି ଦିନକପାଇଁ ଅନ୍ତତଃ ମୋର ସଜେଇବା ଉଚିତ୍ ହବ ଯେହେତୁ ମୁଁ ଜାପାନ୍‌ର ଫୁଲ ସଜେଇବାର କଳା ବିଷୟରେ ତାଲିମ୍ ପାଇନାହିଁ, ମୁଁ ଠିକ୍ କଲି ଯେ ଗତାନୁଗତିକ ଭାବରେ କିଛି ନେଳୀ ପତ୍ରର ପୃଷ୍ଠଭୂମିରେ ଗୋଟିଏ ରକ୍ତଲାଲରଙ୍ଗର ବଡ଼ କାନା ଫୁଲ ରଖିବି ଓ ତା'ର ପୃଥୁଳତାକୁ ସମତୁଲ କରିବାକୁ ଆର କଣରେ ହଳଦିଆ ରଙ୍ଗର ପତରଲଗା ଗୋଟାଏ ଛୋଟ ବାଉଁଶ କଣି ରଖିବି ।

ସକାଳର ଖରା ବୁଢ଼ା ହେଲା ଏବଂ ରାସ୍ତା ଉପରେ ଅନେକ ଛୋଟ ଛୋଟ ପିଲା ସ୍କୁଲକୁ ବହି ଧରି ବାହାରିଲେ ଓ ମୁଁ ଖଣ୍ଡେ ସାଣ୍ଡୁଇଚ୍ ଓ କପେ କଫି ଖାଇ ତଥାପି ତୁମର ଅପେକ୍ଷା କଲି ।

ପ୍ରତିଦିନ ପରି ମୋର ଆଜି ମଧ କିଛି କାର୍ଯ୍ୟସୂଚୀ ରହିଥିବା ଉଚିତ୍ ଏବଂ ଥିବ ମଧ; କିନ୍ତୁ ମୁଁ ଗୋଟିଏ ହେଲେ କାମ ହଠାତ୍ ମନେ କରିପାରିଲି ନାହିଁ । ଆଜି ମୋର ଛୁଟି, ଯାହାକି ରୁଟିନ୍ ବା କାଲେଣ୍ଡର୍ ବହିର୍ଭୂତ । ଏ ଯେପରି ମୋର ଗୋଟାଏ ଅଧିକା ପ୍ରାପ୍ୟ ଯାହା ମତେ ଦିଆଯାଇଚି ଅତୀତର ଅନେକ ଅନେକ କ୍ଷତିର କ୍ଷତିପୂରଣ ବାବଦକୁ ।

ଅକାରଣରେ ରେଡ଼ିଓ ବଜେଇବାକୁ ଆରମ୍ଭ କଲି ଏବଂ ଦେଖିଲି ସବୁଗୁଡ଼ିକ ଷ୍ଟେସନ୍ ସକାଳର ଆସର ବନ୍ଦ କରିଦେଲେଣି ଓ ମଧ୍ୟାହ୍ନର ଆସର ତଥାପି ଡେରି ଅଛି । ଟେବୁଲ୍ ଉପରୁ ବ୍ରେକ୍‌ଫାଷ୍ଟ୍‌ର ସରଞ୍ଜାମ ଉଠିବାର ଶବ୍ଦ ଶୁଣିଲି ଏବଂ ତା’ପରେ ମୁଁ ଗୋଟାଏ ଲମ୍ବା ଝାଡୁ ଧରି ଘରର କଣଗୁଡ଼ାକରେ କେଉଁଠି କେମିତି ଲାଗି ରହିଥିବା ବୁଢିଆଣୀ ବସାଗୁଡ଼ାକ ସଫା କରିବାକୁ ଆରମ୍ଭ କଲି । ମୁଁ ଜାଣି ପାରୁଚି ଯେ ଘରର ସବୁ ଲୋକ ମତେ କେବଳ ନୀରବରେ ଲକ୍ଷ୍ୟ କରୁଛନ୍ତି । ସେମାନେ ଠିକ୍ କରିପାରୁ ନାହାନ୍ତି, ମୁଁ ହତାଶରେ ମ୍ରିୟମାଣ ନା କାହାର ପ୍ରତୀକ୍ଷାରେ ଉତ୍ତେଜିତ । ଗୋଟାଏ ଇତର ଗାଡ଼ି ମୋଡ ପାଖରେ ଗାଡି ବୁଲାଉଚି । ଷ୍ଟୁପିଡ୍ ! ଏଇ କାଗାଟାକୁ ଯେମିତି ଗାଡ଼ି ବୁଲେଇବାକୁ ପଟ୍ଟା ନେଇଛନ୍ତି ଏମାନେ ! କିଏ ଆସି ପଚାରିଲା ଖାଇବାକୁ କ’ଣ କରାଯିବ ? ଜବାବ ଦେଲି, ‘ଯାହା ପ୍ରତିଦିନ ହୁଏ । ଏ କଥା କ’ଣ ମତେଇ ଚିନ୍ତା କରିବାକୁ ପଡ଼ିବ ? ହଁ ଦୁଇଜଣଙ୍କପାଇଁ ।’ ଡ୍ରଇଂରୁମ୍‌କୁ ଗଲି । ସେଠି ଦେଶୀ ବିଦେଶୀ ଅନେକ ପତ୍ରିକା ବହୁ ସମ୍ବାଦର ସମ୍ଭାର ଧରି ମତେ ଉର୍ଦ୍ଧ୍ୱମୁଖରେ ଅନେଇ ରହିଛନ୍ତି । କ’ଣ ଗୋଟାଏ ମ୍ୟାଗାଜିନ୍ ଆଣି ପୃଷ୍ଠା ଓଲଟାଇଲି ।

ପୃଥିବୀର ସବୁଠାରୁ ଦୀର୍ଘଦିନଧରି ଜୀବିତ ଥିବା ହାର୍ଟ ଟ୍ରାନ୍‌ସପ୍ଲାଣ୍ଟ୍ ପେସେଣ୍ଟ ଫିଲିପ୍ ବ୍ଲେଇବର୍ଗଙ୍କର ପ୍ରତ୍ୟକ୍ଷ କାହାଣୀ — ସେ ଲେଖିଛନ୍ତି ପ୍ରଥମ ପୁରୁଷରେ ।

‘ମୁଁ ଆଗରୁ ଜାଣିଥିଲି ହାର୍ଟ କେବଳ ଗୋଟାଏ ପମ୍ପ ଯାହା ଦୁଇଟି ଚେମ୍ବର୍‌ରେ ବିଭକ୍ତ । ଗୋଟିଏ ଅରିକଲ୍ ଓ ଅନ୍ୟଟି ଭେଣ୍ଟ୍ରିକଲ୍ । ଅରିକଲ୍‌ରେ ରକ୍ତ ଆସି ପୂର୍ଣ୍ଣ ହୁଏ ତ ଭେଣ୍ଟ୍ରିକଲ୍ ତାହାକୁ ପମ୍ପ କରି ବାହାର କରିଦିଏ ଫୁସ୍‌ଫୁସ୍ ଭିତରକୁ ।

‘ପ୍ରଫେସର କ୍ରିସ୍ ବର୍ଣ୍ଣାଡ଼ ମୋର ହୃଦ୍‌ପିଣ୍ଡର ଚାରିପଟେ ଥିବା ସମସ୍ତ ରକ୍ତବାହୀ ଧମନୀଗୁଡ଼ିକ କେତେଗୁଡ଼ିଏ ଷ୍ଟୋପ୍ ସାହାଯ୍ୟରେ ଚାପିରଖି ମୋର ରକ୍ତପ୍ରବାହକୁ ପୂର୍ବ ପ୍ରସ୍ତୁତି ଅନୁସାରେ ଗୋଟିଏ ବାଇ-ପାସ୍ ମେସିନ୍ ସହିତ ଯୁକ୍ତ

କରିଦେଲେ, ଏବଂ ଆଶ୍ଚର୍ଯ୍ୟ ! ଏହି ଯନ୍ତ୍ରଟି ମୋପାଇଁ ନିଃଶ୍ୱାସ ଗ୍ରହଣ କଲା ଏବଂ ମୋର ହୃତ୍‌ପିଣ୍ଡ ଓ ଫୁସ୍‌ଫୁସ୍‌କୁ ଛାଡ଼ିଦେଇ ଦେହର ଅନ୍ୟ ସମସ୍ତ ଅଂଶପାଇଁ ବିଶୋଧିତ ରକ୍ତ ମଧ୍ୟ ସଞ୍ଚାଳନ କରିବାକୁ ଲାଗିଲା ।'

ବୋଧହୁଏ ଅନେକ ସମୟ ଧରି ବିଦ୍ୟୁତ୍‌-ସଂଯୋଗ ବିଚ୍ଛିନ୍ନ ଥିଲା, ନ ହେଲେ ଆପଣା ଛାଏଁ ରେଡିଓ ବାଜି ଉଠି ନ ଥାନ୍ତା । ପାଣିର ଫୁଆର ପରି ଭାସି ଆସୁଚି ଉଚ୍ଛ୍ୱସିତ ସଙ୍ଗୀତ ! ମଧ୍ୟାହ୍ନଭୋଜନ ପାଇଁ ଏକ ଜାତୀୟ ସମୟ ନିର୍ଦ୍ଦିଷ୍ଟ କରାଯାଇ ପାରିଲା ନାହିଁ । ଅଥଚ ଏ ଦେଶର ତଥାକଥିତ ଜନନାୟକମାନେ କୁଆଡ଼େ ଜାତୀୟ ସଂହତି ରକ୍ଷା କରିବାକୁ ଚିନ୍ତା କରି କରି ରକ୍ତଚାପରେ ପୀଡ଼ିତ ହୋଇ ପଡ଼ିଲେଣି ।

ବହିରେ ମନୋନିବେଶ କଲି ।

'ଏହା ପୂର୍ବରୁ କ୍ଲାଇବ୍‌କୁ (ମୁଁ ଯାହାର ହୃତ୍‌ପିଣ୍ଡର ଉତ୍ତରାଧିକାରୀ) ପ୍ରାୟ ମୃତ ବୋଲି ଘୋଷଣା କରାଯାଇଥିଲା । ଅତିଶୀଘ୍ର କ୍ଲାଇବ୍‌ର ଛାତିଟାକୁ ଚିରି ଦେଇ ଅନ୍ୟ ଏକ ହାର୍ଟ-ଲଙ୍ଗ୍ ମେସିନ୍ ସାହାଯ୍ୟରେ ତା'ର ଜଡ଼ ହୃତ୍‌ପିଣ୍ଡ ଭିତରକୁ ଅପେକ୍ଷାକୃତ ଶୀତଳ ରକ୍ତ ପ୍ରବାହିତ କରାଯାଇ ତାକୁ ଏକ ତରଳ ସଲ୍ୟୁସନ୍ ଭିତରେ ବୁଡ଼ାଇ ରଖା ଯାଇଥିଲା ।'

ଅତି ମୃଦୁ ସ୍ୱରରେ ଘଣ୍ଟାର ପେଣ୍ଡୁଲମ୍ ବାଜି ଉଠିଲା । ଥରେ ମାତ୍ର । ଯେପରି କାହାର ସୁନାର କଙ୍କଣରେ ପଟେ ଚୁଡ଼ି ବାଜିଗଲା । ଘଣ୍ଟାରେ ଠିକ୍ ଗୋଟାଏ ବାଜି ତିରିଶ୍ ମିନିଟ୍; କିନ୍ତୁ ତମେ ଆସିଲ ନାହିଁ ।

ତମେ ବୋଧହୁଏ ଭୟ କଲ ମୁଁ ତୁମର ହୃତ୍‌ପିଣ୍ଡ ମାଗି ବସିବି ବୋଲି ?

ଏବେ ତ ତମେ ସ୍ୱଚ୍ଛନ୍ଦରେ କହିପାରିବ ଯେ, ତମେ ଭୁଲରେ ତମର ହୃତ୍‌ପିଣ୍ଡଟାକୁ ଫ୍ରିଜ୍ ଚେୟର ଭିତରେ ଛାଡ଼ି ଚାଲି ଆସିଛ ବୋଲି ।

ପ୍ରବନ୍ଧଟା କିନ୍ତୁ ମତେ ଆଚ୍ଛନ୍ନ କରି ରଖିଛି ।

'ପ୍ରଫେସର୍ ବର୍ଣ୍ଣାଡ଼ଙ୍କ ହାତରେ ଅତି ଅଳ୍ପ ସମୟ । ସେ ମୋର ହୃତ୍‌ପିଣ୍ଡକୁ ତା'ର ପାରିପାର୍ଶ୍ୱିକ ଧମନୀଗୁଡ଼ିକର ଜାଲରୁ ଅତି ସାବଧାନତାର ସହିତ ମୁକ୍ତ କରି ତାର ଦୀର୍ଘ ୫୮ ବର୍ଷର ଆଶ୍ରୟସ୍ଥଳୀରୁ ପଦାକୁ ଆଣିଲେ । ଇସ୍ପାତର ସ୍ନାୟୁରେ ଗଢା ଡ଼ାକ୍ତର ଓ ନର୍ସମାନେ ମଧ୍ୟ ମୁହୂର୍ତ୍ତକ ପାଇଁ ଅସ୍ୱସ୍ତିକର ହୋଇ ଉଠିଲେ । ମୁଁ ଏହି ମୁହୂର୍ତ୍ତରେ ପୃଥିବୀର ଦ୍ୱିତୀୟ ଲୋକ ଯେ'କି ବିନା ହୃତପିଣ୍ଡରେ ମଧ୍ୟ ତଥାପି ଜୀବିତ ଅଛି ।'

ଜନାନ୍ତିକରେ କହେ ସୁଜାତା, ମୂର୍ଖ ଫିଲିପ୍ ବ୍ଲେବର୍ଗ କ'ଣ ଜାଣନ୍ତି ଯେ ମୁଁ ହେଉଛି ତୃତୀୟ ବ୍ୟକ୍ତି । କାରଣ ହୃତ୍‌ପିଣ୍ଡ ନଥାଇ ଏ ପୃଥିବୀରେ ବଞ୍ଚିଥିବା ସର୍ବପ୍ରଥମ ଲୋକ ହଉଚ ତୁମେ !

'ତା'ପରେ କ୍ଲାଇବ୍‌ର ହୃତ୍‌ପିଣ୍ଡକୁ ମୋର ଛାତିର କୋଟର ଭିତରେ ରଖି ବିଚ୍ଛିନ୍ନ ହୋଇଥିବା ଅଂଶଗୁଡ଼ିକୁ ନିଖୁଁଣଭାବରେ ସିଲେଇ କରିଦିଆଗଲା । ବର୍ତ୍ତମାନ ଆଉ ଗୋଟିଏ ମାତ୍ର କାମ ବାକି । ମୋର ରକ୍ତପ୍ରବାହ ଚାଲୁରଖିଥିବା ମେସିନ୍‌ଟିକୁ ବନ୍ଦ କରିଦେଇ ରକ୍ତର ସ୍ରୋତକୁ ମୋର ନୂତନ ଅତିଥି-ହୃତ୍‌ପିଣ୍ଡ ମୋର ରକ୍ତପ୍ରବାହର ଗୁରୁଦାୟିତ୍ୱ ବହନ କରିବ । ଏହା ଏକ ଚରମ ମୁହୂର୍ତ୍ତ ! ମୁଁ କ'ଣ ଆଉଥରେ ବଞ୍ଚିଉଠିବି ? ମୋର ରକ୍ତର ପ୍ରଥମ ସ୍ପର୍ଶରେ କ୍ଲାଇବ୍‌ର ହୃତ୍‌ପିଣ୍ଡ ଜୀବନ୍ତ ହୋଇ ଉଠିଲା ।'

ମଧ୍ୟାହ୍ନ ଭୋଜନର ସମୟ ବୋଧହୁଏ ଅନେକ ଗଡ଼ିଗଲାଣି । କାରଣ ଛାଇ ସବୁ ଡେଙ୍ଗା ହୋଇ ଲମ୍ବିବାକୁ ଆରମ୍ଭ କଲେଣି । ଖାଇବା ଟେବୁଲ୍ ପାଖରେ ଯାଇ ବସିଲି । ତମେ ଆସିଥିଲେ ଯେଉଁଠି ବସିଥାଆନ୍ତ ସେ ଚଉକୀଟା ଶୂନ୍ୟ ପଡ଼ିଚି; କିନ୍ତୁ ତା ସାମ୍ନାରେ ଥୁଆ ହୋଇଥିବା ପୋର୍ସିଲେନ୍‌ର ପ୍ଲେଟ୍‌ଟା ଭୟରେ ଅନେକ ଧଳା ହୋଇଯାଇଚି ଓ ଗିଲାସଭିତରେ ନାପ୍‌କିନ୍‌ଟା କାକୁସ୍ଥ ହେଇ ଅନେକଭିତରକୁ ପଶିଯାଇଚି ।

ଠିକ୍ ଏଇ ସମୟରେ ବୋଧହୁଏ ମୁଁ ତୁମକୁ ପଚାରିଥାଆନ୍ତି, ଅନେକଦିନ ତମ ସହିତ ଯୋଗାଯୋଗ ନାହିଁ; ତେଣୁ ତମେ କ'ଣ ଖାଇବାକୁ ଭଲପାଇବ ସେଟା ମୁଁ ଠିକ୍ ଅନ୍ଦାଜ କରି ପାରିନାହିଁ ହୁଏତ ।

ତମେ କହିବ, 'ଖାଇବାଟା କ'ଣ ଏତେ ବେଶୀ ଚିନ୍ତା କରାଯିବାର କଥା ?'

ତା'ପରେ ବୋଧହୁଏ ଆମେମାନେ ଚୁପ୍‌ଚାପ୍ ସୁପ୍ ଖାଉଚେ ଦୀର୍ଘ ପାଞ୍ଚମିନିଟ୍ ଧରି, ଏବଂ ମନେ ମନେ ଦ୍ୱିତୀୟ ସଂଳାପର ଶବ୍ଦ ଯୋଜନା କରୁଚେ । କିଛି ଘଟୁ ନାହିଁ । ଏକ ନିସ୍ତବ୍ଧ, ନିସ୍ପନ୍ଦ ଦ୍ୱିପହର ଗୋଟାଏ ଧୂସର ନାଇଲନ୍ ମଶାରି ପରି ଆମ ଉପରେ ଝୁଲି ରହିଚି । ଏଇ ସମୟରେ କେହି ହେଲେ କିଛି କହିବା ଉଚିତ୍ ନ ହେଲେ ଅନ୍ୟୁନ କିଛି ଗୋଟାଏ ତଳେ ପଡ଼ି ଭାଙ୍ଗିଗଲେ ମଧ୍ୟ କିଛିଟା କ୍ଷତିପୂରଣ ହେଇ ପାରନ୍ତା ।

ଗୋଟାଏ ପ୍ରାସଙ୍ଗିକ କଥା ପାଇଚି—

'ତମର ଡ୍ରାଇଭର ଖାଇଚି ତ ?'

'ମୁଁ ଡ୍ରାଇଭର୍ ଆଣି ନାହିଁ । ଅନେକ ସମୟରେ ଡ୍ରାଇଭର୍‌କୁ ସାଙ୍ଗରେ ଅଣାଯାଏ ନାହିଁ ।'

ଏଇ, ତମେ ପ୍ରଥମଥରପାଇଁ ଲୌକିକତାର ପାହି ଡେଇଁ ଅନ୍ତରଙ୍ଗତାର ଚୌହଦୀ ଭିତରକୁ ଗୋଡ ବଢ଼େଇଚ; କିନ୍ତୁ, ମୁଁ ବି ଏ ଖେଳର ନିୟମ ଜାଣେ । ତମେ ପୂରାପୂରି ମୋର ଇଲାକାକୁ ନ ଆସିଲେ ମୁଁ ବି ନିର୍ଲିପ୍ତ !

କାହିଁକି ! ତମ ଡ୍ରାଇଭର କ'ଣ ଦେଖିବାକୁ ସୁନ୍ଦର ନୁହଁ ? ଅତି ନିରପରାଧ ଏକ ପ୍ରଶ୍ନ । କଣ୍ଟା ଚାମୁଚ୍‌ରେ ବିଦ୍ଧ 'ଫିସ-ଫ୍ରାଇ'ଟା ପ୍ରାୟ ତମ ପ୍ଲେଟରେ ଖସି ପଡ଼ିଥିଲା ।

'ଆପଣଙ୍କର ରୁଚି ଏତେ ତଳକୁ ଗଲାଣି କେବେଠାରୁ ?' ତମର ମୁହଁ ଲାଲ ପଡ଼ି ଆସୁଚି ହୋମାଗ୍ନିରେ ଜଳି ଉଠୁଥିବା କୃଶତନୁ ତାମ୍ରପାତ୍ରୀ ପରି ।

ମତେ ଭୁଲ ବୁଝନି ସୁଜାତା ! ମୁଁ କ'ଣ କହୁଥିଲି କି, ମାନେ, ମୋ'ର କହିବାର କଥା, ମୁଁ ଯଦି ଡ୍ରାଇଭର ରଖି ପାରନ୍ତି ତାହା ହେଲେ ତା'ର ଚାକିରୀର ସର୍ବପ୍ରଥମ ସର୍ତ୍ତ ହୁଅନ୍ତା ସେ ଅନେକ୍ ତେଲ ଲଗେଇ ତା'ର ବେକ ପାଖର କଲାରକୁ ମଇଳା କରି ପାରିବ ନାହିଁ । କାରଣ ଡ୍ରାଇଭରର ଏହି ଦୁଇଟି ଅଂଶ ସହିତ ମୋ'ର ସବୁଠାରୁ ବେଶୀ ଚାକ୍ଷୁଷ ସମ୍ପର୍କ !

ତମର ବୁଦ୍ଧିକୁ ତାରିଫ କରିବାର କଥା । କାରଣ ତମେ ବର୍ତ୍ତମାନ ଘେଣ୍ଟାପରି ନିଜକୁ ଗୋଟେଇ ନବାକୁ ବସିଚ ।

'ଛାଡ଼ନ୍ତୁ ସେ ଆଲୋଚନା । ଆପଣ ଜଣେ ଫିଲ୍ମଷ୍ଟାର ଡ୍ରାଇଭର ରଖିବେ, ହେଲା ତ !'

ଯା' ଭିତରେ କିଛି ସମୟ ଗତ ହୋଇଯିବଣି, କାରଣ ମୁଁ ପ୍ଲେଟ୍ ଉପରେ କଣ୍ଟା ଆଉ ଛୁରୀକୁ ଯୋଡ଼ି ଦେଇ ବସି ରହିଛି ଓ ମୋ ସାମ୍ନାରେ ରଖା ହୋଇଥିବା କଷ୍ଟାର୍ଡ ବୋଧହୁଏ ରୁମ୍ ଟେମ୍ପରେଚରକୁ ଆସି ଗଲାଣି । କାରଣ ତା' ଉପରେ ଗୋଟାଏ ଅତିକାୟ ମାଛି ନିବିଷ୍ଟ ଚିତ୍ତରେ ବସି ରହିଚି ।

ଏବଂ ତମ ପାଇଁ ଉଦ୍ଦିଷ୍ଟ ପୋର୍ସିଲେନ ପ୍ଲେଟ୍‌ଟା ପ୍ରତ୍ୟାଖ୍ୟାନର ହତାଶାରେ ଗୋଟାଏ ହାଡର ଥାଳିଆ ପରି ଶେତା ଦେଖା ଗଲାଣି ।

ମୋର ବୋଧହୁଏ ସାମାନ୍ୟ ଧୈର୍ଯ୍ୟଚ୍ୟୁତି ହବା ଉଚିତ । ଏଇ ପ୍ରତୀକ୍ଷା ଗୋଟାଏ ସଙ୍ଗୀତ ଆସରର ଅତି ଦୀର୍ଘ ଆଳାପ ପରି ମତେ ଅତିଷ୍ଠ କରି ଦେଲାଣି; କିନ୍ତୁ ତମେ ଆସିଲ ନାହିଁ କାହିଁକି ?

ତମର ମନ ତ ପାରଦ ପରି ଚଞ୍ଚଳ ଆଉ ସ୍ପର୍ଶକାତର ଯାହା ସାମାନ୍ୟ ଆଘାତରେ କୋଟି କୋଟି ଭଗ୍ନାଂଶରେ ବିଚ୍ଛୁରିତ ହେଇ ପଡ଼ିବ ବର୍ଣ୍ଣିଳ ଇନ୍ଦ୍ରଧନୁର ରଙ୍ଗ କଣିବା ପରି । ମୁଁ ଯେହେତୁ ଜାଣେ ଯେ ନ ଆସିବା ପାଇଁ ତମ ହାତରେ ପର୍ଯ୍ୟାପ୍ତ ବାହାନା ମହଜୁଦ୍ ଅଛି, ମୋର ନିଜର ମାନସିକ ସ୍ୱାସ୍ଥ୍ୟ ପାଇଁ ମୁଁ ପୁଣି ଥରେ ଫେରି ଆସିଲି ଡ଼କ୍ଟର ବ୍ଲେଲବର୍ଗଙ୍କର ଉପାଖ୍ୟାନକୁ ।

'ମୋର ହୃତପିଣ୍ଡ ପୁନଃରୋପଣ ପରେ ମତେ ବହୁଲୋକ ସେଇ ଗୋଟିଏ ପ୍ରଶ୍ନ ପଚାରିଛନ୍ତି ଯେ ମୋର ଛାତିର କୋଟର ଭିତରେ ଯେ ଗୋଟାଏ ମୃତ ଲୋକର ଛାତି ଟିକ୍ ଟିକ୍ କରି ଚାଲିଛି । ସେ ବିଷୟରେ କ'ଣ ମୁଁ ଖୁବ୍ ସଚେତନ ? ମତେ କ'ଣ ଅଲଗା ଲାଗୁଚି ?

'ମୋର ଭାବନା, ଦୃଷ୍ଟିକୋଣ, ଇମୋସନ୍ କଣ ପରିବର୍ତ୍ତିନ ହୋଇଛି ?

'ମୁଁ ଜବାବ୍ ଦେଉଚି ଯେ ମତେ ଟିକିଏ ହେଲେ ପରିବର୍ତ୍ତନ ଜଣା ପଡୁନାହିଁ । କବି ଲେଖକମାନେ ହୃଦୟ ବିଷୟରେ ଯେତେ ଯାହା ଲେଖନ୍ତୁ ନାଁ କାହିଁକି କାହାର ହୃଦୟ ଲହୁଣୀରେ ବା କାହାର ହୃଦୟ ପାଷାଣରେ ତିଆରି ନୁହଁ । ସବୁ ଲୋକର ହୃଦୟ ମାଂସପେଶୀରେ ତିଆରି ଗୋଟାଏ ପମ୍ପ୍ । ମୁଁ ଏବେ ମଧ୍ୟ ସେଇ ପୁରୁଣା ବ୍ଲେବର୍ଗ, ଯାହାର ଭାବନା, ଚିନ୍ତା ବା ଇମୋସନ୍‌ର ସାମାନ୍ୟତମ ପରିବର୍ତ୍ତନ ମଧ୍ୟ ହୋଇନାହିଁ । କେବଳ ମୋର ରୁଗ୍ଣ, ଦୁର୍ବଳ ହୃତପିଣ୍ଡଟାକୁ ଗୋଟାଏ ପଚା ଅପେଣ୍ଡିକ୍ସ ପରି କାଟି ଫୋପାଡ଼ି ଦିଆ ଯାଇଚି ।

'ଜାନୁଆରୀ କୋଡ଼ିଏ ତାରିଖରେ କେପ୍‌ଟାଉନର ସବୁଠାରୁ ବଡ ହର୍ସରେସ ଅଛି 'ଦି ମେଟ୍ରୋପଲିଟାନ ହାଣ୍ଡିକ୍ୟାପ୍' ଆଉ ମୁଁ ଏଲିନ୍‌କୁ କହିଚି ଯେ ସେ ତା'ର ନୀଳ ଆଖି ସହିତ ସାମଞ୍ଜସ୍ୟ ରଖି 'ବ୍ଲୁ ମେର୍ଲିନ' ବା 'ବ୍ଲୁ ଟାଭାନିଅର' ଘୋଡ଼ା ଉପରେ ବାଜି ରଖିପାରେ ଏବଂ ତାଗିଦ୍ କରିଚି ଯେ ମୋର କାର୍‌ର ଟାକ୍ସ ଓ ଇନ୍‌ସୁରାନ୍‌ସ ତାକୁ ରଖିବାକୁ, ଯେପରି ମୁଁ ଏଠୁ ବାହାରି ଯାଇ ରାସ୍ତାରେ ଗାଡ଼ି ଚଳେଇ ପାରେ ପୂର୍ବପରି ।

'ମୁଁ ମନେ ମନେ ମୋର ହୃତପିଣ୍ଡର ବିଗତ-ଅଧିକାରୀ କ୍ଲାଇବ୍ ହଷ୍ଟକୁ ଅଶେଷ ଧନ୍ୟବାଦ ଦେଲି ।'

ଏ ବିଷୟରେ ଆଉ ଯୁକ୍ତି ଚଳେ ନା । ସିଧାସଳଖ ପ୍ରମାଣ ହେଇଗଲା ଯେ ହୃଦୟ ଫୃଦୟ କିଛି ନୁହଁ । ଅତୀତରେ ଏହି ବସ୍ତୁ ସମ୍ପର୍କରେ ଆମେ ହୁଏତ କେତେବେଳେ କେମିତି କଥାବାର୍ତ୍ତା କରିଥିବା କି ପଦେ ଅଧେ ଲେଖିଥିବା । ସେଗୁଡା ସବୁ ନିର୍ଭେଜାଲ୍ ମିଥ୍ୟା । ନିକଟ ଭବିଷ୍ୟତରେ ହୁଏତ ବାସ୍କେଟ୍‌ରେ ହୃତପିଣ୍ଡ ଧରି ହକର୍‌ମାନେ ଡ଼ାକ୍ତରଖାନା ହତା ଭିତରେ 'ଫେରି' କରି ବୁଲିବେ । କିଏ କହିବ 'ପଞ୍ଚତନ୍ତ୍ର'ର ସେଇ ମାଙ୍କଡ ହୁଏତ ଆମଠାରୁ ଅନେକ ବିଜ୍ଞ ଥିଲା ବୋଲି ତା'ର କଲିଜାକୁ ନଟ୍ ବୋଲ୍‌ଟ ଖୋଲି ଗଛର କୋଟର ଭିତରେ ରଖିଦେଇ କୁମ୍ଭୀର ସହିତ ଆତ୍ମୀୟତା କରିବାକୁ ଯାଇଥିଲା । ହୃଦୟର କାଉଣ୍ଟରପାର୍ଟ ଚନ୍ଦ୍ର ଉପରେ ଆକ୍ରମଣ ଚାଲିଚି - ଚାଲିଚି କାହିଁକି ସମାପ୍ତପ୍ରାୟ । ସେଠି ଆମେମାନେ ଯାଇ ବସବାସ କରିବା

ଓ ନବବିବାହିତ ଦମ୍ପତି ଖୋଦ୍ ଚନ୍ଦ୍ର ଉପରେ ବିବାହ-ବିଚ୍ଛେଦ ମାମଲା ଦାଏର କରିବେ । ଏଠି ମୁଁ, ତମେ, ଅର୍ଥାତ୍ ଆମେମାନେ କେହି ଆଉ ଚନ୍ଦ୍ରାହତ ହେବା ନାହିଁ । ନିକଟ ଭବିଷ୍ୟତରେ ଚନ୍ଦ୍ର-ଏକାଦଶ, ମଦର-ଆର୍ଥ-ଏକାଦଶ ସହିତ ଫୁଟବଲ ଖେଳିବାକୁ ପ୍ରଶାନ୍ତ ମହାସାଗର ସ୍ପେସ ପୋର୍ଟରେ ଅବତରଣ କରିବେ ।

ତମେ କିନ୍ତୁ ଏଗୁଡ଼ା ଅନେକ ଆଗରୁ ଜାଣିଥିଲ ଏବଂ ଯେହେତୁ ତମେ ଜାଣିଥିଲ ଯେ, ଚନ୍ଦ୍ର, ହୃଦୟ, ମନ ସବୁ ବାଜେ କଥା, ତମେ ଯଥାର୍ଥରେ ତମର ପଞ୍ଚ ଇନ୍ଦ୍ରିୟ ଉପରେ ଅନେକ ଆସ୍ଥା ସ୍ଥାପନ କରିଥିଲ ଏବଂ ମଝିରେ ମଝିରେ ମନର ଅଣ୍ଟାରେ ଦଉଡ଼ି ବାନ୍ଧି ତାକୁ ଗୋଟାଏ କୁଖ୍ୟାତ ଦାଗୀ ପରି ହୁଏତ କିଛି ବାଟ ଯିବାକୁ ଛାଡୁଥିଲ ଏବଂ ଇଚ୍ଛା ଅନୁସାରେ ପାଖକୁ ଟାଣି ଆଣି ପାରୁଥିଲ ।

କିନ୍ତୁ ହାୟ ! ଶେଷ ପର୍ଯ୍ୟନ୍ତ ତମେ ତ ଠକିଗଲ ! ତମେ ଭାବୁଥିଲ ତ୍ୱକ୍ ପରି, ହାତପରି, ସ୍ନାୟୁପରି ଏପରିକି ହୃତ୍‌ପିଣ୍ଡପରି ତମର ମନଟାକୁ ଟିକିଏ ସମୟ ପାଇଲେ ମରାମତ୍ କରିନେବ; କିନ୍ତୁ ଶୁଣିଲ ତ ଡାକ୍ତରମାନେ କହିଲେ ମନର ଗ୍ରାଫ୍‌ଟିଂ କରିବା ସମ୍ଭବ ନୁହଁ । ଇଲାଟର ରେଖାପରି ମନର ଟେପ୍‌ରୁ ଗୋଟାଏ ମଧ ଉଚ୍ଚାରିତ ବେଦନା ଲିଭେଇ ଦିଆ ଯାଏନା; ସେଥିପାଇଁ ତ ବିଦେଶରେ କୌଣସି ବ୍ୟାଙ୍କ୍‌ରେ ତମର ମନର ଚେକ୍‌ଟାକୁ ଭଙ୍ଗେଇ ପାରିଲ ନାହିଁ । କିଏ ଚିହ୍ନଟ କରିବ ଚେକ୍‌ର ଦସ୍ତଖତ୍ ? ଯୌବନର ସମସ୍ତ ସଞ୍ଚୟ ସତ୍ତ୍ୱେ ତମେ ନିଃସ୍ୱ ହେଲ । ଏକ ରିକ୍ତ ମନ ନେଇ ହାତେ ହାତେ ବୁଝିଲ ମନଇ ମନ; ଇନ୍ଦ୍ରିୟ ନୁହଁ । ମନ ଇନ୍ଦ୍ରିୟଠାରୁ ଆହୁରି ଅନେକ କିଛି ।

ଯା ଭିତରେ ବୋଧହୁଏ ମୁଁ ତମକୁ କିଛିଟା ଗାଳି ଗୁଲଜ କରୁଚି; କିନ୍ତୁ ସେଥିପାଇଁ ମୁଁ ତିଳେମାତ୍ର ଦୁଃଖିତ ନୁହଁ; କିନ୍ତୁ ଯେ' ସିନା ଲେଖାର କଥା ! ତମେ ଯଦି ବର୍ତ୍ତମାନ ଆସି ମୋ ପାଖରେ ପହଞ୍ଚନ୍ତ ତାହାହେଲେ ମୁଁ ଏକ ତୋଷାମଦକାରୀ ପରି କହନ୍ତି, 'ତମର ଆସିବାପାଇଁ ମୁଁ ସତରେ କୃତଜ୍ଞ', ଏବଂ ଅନ୍ୟାନ୍ୟ କୁଶଳ ଜିଜ୍ଞାସା ଶୀଘ୍ର ଶୀଘ୍ର ସାରି ଦେଇ ପଚାରନ୍ତି, 'ମୁଁ ତୁମକୁ ଅପେକ୍ଷା କରି ଆଦୌ କ୍ଳାନ୍ତ ହୋଇ ନାହିଁ, ଏବଂ ପଚାରନ୍ତି, 'ତମର ଏ ଦୀର୍ଘ ପଥଶ୍ରମର କ୍ଳାନ୍ତି ଅପନୋଦନ କରିବାକୁ ତମେ ଖୁବ୍ ଶୀଘ୍ର କ'ଣ ଖାଇବାକୁ ପସନ୍ଦ କରିବ ? ଚିଲ୍‌ଡ ବିଅର ନା ନିଟ୍ ବ୍ରାଣ୍ଡି ?'

ସର୍ବନାଶ ! ତମେ ଏ ଚିଠି ପଢୁ ପଢୁ ମଧ ବିରକ୍ତ ହେଇ ଉଠିବଣି । ତମର ଦୁଇଟା ଆଖି ମୋ ଉଦ୍ଦେଶ୍ୟରେ ଚକ୍ ଚକ୍ ବୁଲିଯିବ ଏବଂ ତା'ପରେ ତମର କାନ ପାଖ ସାମାନ୍ୟ ଆରକ୍ତ ହୋଇ ଉଠିବ । ତମେ ବିରକ୍ତ ହେଲେ ଖୁବ୍ ସୁନ୍ଦର ଦେଖାଯାଅ, କାରଣ ତମର ଗହମ ରଙ୍ଗର ମୁହଁ ଉପରକୁ କିଛି ରକ୍ତ ଉଠି ଆସେ ।

ମାଛି-ଅନ୍ଧାର ହୋଇ ଆସିଲାଣି ।

ଲଘୁ ସନ୍ତରଣ କରି ଗୋଟିଏ ବଳକା-ପରିବାର ଘରକୁ ଫେରୁଛନ୍ତି ।

ପଶ୍ଚିମ ଆକାଶରେ କେଉଁ ଦୁଷ୍ଟପିଲା ନେଳିକାଳି ଓ ନାଲିକାଳି ଦୁଆତକୁ ଫେଣ୍ଟି ଏକାକାର କରୁଚି ମନର ଖିଆଲରେ ।

ଘର, ଗଛ, ରେଲଲାଇନ୍ ସବୁ ଅସ୍ପଷ୍ଟ ହୋଇ ଆସିଲେଣି । ସେମାନଙ୍କର ଡ଼ିଟେଲ୍ସ ଆଉ ଆଖିରେ ପଡ଼େ ନାଁ । ସବୁଦିନ ପରି ଏଇ ମୂହୂର୍ତ୍ତରେ ଆଜି ବି ଏ ସହର ଆଲୋକର ମାଳା ପିନ୍ଧି ମତେ ଆସିବ ନିମନ୍ତ୍ରଣ କରିବାକୁ, 'ଆସ, ସହରର ସମସ୍ତ ନିଷିଦ୍ଧ-ଦ୍ୱାର ଖୋଲିବାର ସମୟ ହେଇଗଲା ।'

କିନ୍ତୁ ମୁଁ ଆଜି ବାହାରକୁ ଯିବି ନାହିଁ । ଯେତେ କ୍ଳାନ୍ତିକର ହେଲେ ମଧ ଏଇ ଅପେକ୍ଷା କରିବାରେ ଏକ ଅଦ୍ଭୁତ ଆନନ୍ଦ ଅଛି । ସେଇଥିପାଇଁ ତ ଚନ୍ଦ୍ରାବଳୀଠାରୁ ଅନେକ ବେଶୀ ସାର୍ଥକ ରାଧିକାର ଚରିତ୍ର ଏବଂ ଦୁହିଁଙ୍କର ଅନେକ ଊର୍ଦ୍ଧ୍ୱରେ ଚନ୍ଦ୍ରସେଣା !

ଛାଡ ! ସନ୍ଧ୍ୟା ଗଭୀର ହୋଇ ଆସୁଛି ଆସ୍ତେ ଆସ୍ତେ ଏବଂ ଆକାଶର ତାରାମାନେ ତମର ଆଖିପରି ଜଳୁଛନ୍ତି । ତମେ ଗୋଟିଏ ସମ୍ବାଦ ଜାଣି ନାହଁ । ତମର ମା'ଙ୍କୁ ପଚାରିଲେ ସେ' ହୁଏତ କହିବେ । ତମକୁ ସେ' ଯେଉଁଦିନ ଗର୍ଭରେ ଧାରଣ କଲେ ସେଦିନ ରାତିରେ ଆକାଶରୁ ଦୁଇଟି ନକ୍ଷତ୍ର କକ୍ଷଚ୍ୟୁତ ହୋଇଥିଲେ ଏବଂ ତମର ମାତା ସେମାନଙ୍କୁ ଆବାହନ କରି କହିଥିଲେ, 'ହେ ! ଉଜ୍ଜ୍ୱଳ ଜ୍ୟୋତିଷମାନେ ! ଯଦି ମୋ'ର ଗର୍ଭସ୍ଥ ସନ୍ତାନ ପୁତ୍ର ହୁଏ ତାହାହେଲେ ତମେମାନେ ତା'ର ଲଲାଟ ଓ ନାଭିପଦ୍ମରେ ଅବସ୍ଥାନ କର, ଓ ଯଦି କନ୍ୟା ହୁଏ ତାହାହେଲେ ତା'ର ଦୁଇଟି ଚକ୍ଷୁ ମଣ୍ଡନ କର ।'

ରାତ୍ରି ! ମାୟାବିନୀ ରାତ୍ରି ଆଗତ ! ଯାଦୁକରୀ ଅଭ୍ୟାସ ଏକ ଅପୂର୍ବ ମୋହିନୀ ରୂପ ଧରି ମୋ' ଆଗରେ ଆସି ଠିଆ ହେଲାଣି । ତା'ର ଗୋଟିଏ ହାତରେ ମଦିରା ଓ ଅନ୍ୟଟିରେ ତକ୍ଷକ । ତମେ ହୁଏତ ମତେ ଦୟା କରିବାକୁ ଆରମ୍ଭ କରିଚ, ଯେମିତି ଫାସୀର ହୁକୁମ୍ ଦେଇସାରି ବିଚାରକ ଫାସୀ ଆସାମୀକୁ ଅନୁକମ୍ପାର ଆଖିରେ ଦେଖେ । ଠିକ୍ ସେମିତି ।

ମୁଁ ନିଜେ ମଧ ଅନେକ ଚେଷ୍ଟା କରିଚି, କିନ୍ତୁ ଶେଷରେ ପରାଜୟ ସ୍ୱୀକାର କରିଚି । ପ୍ରତିଦିନ ସକାଳେ ମୁଁ ଶପଥ କରିଚି, ନାଁ ଆଉ ନୁହଁ, ଏଇ ଅନନ୍ତ-ଯୌବନା ଅଭ୍ୟାସ ସହିତ ମୋର ଏଇ ଶେଷ ରାତ୍ରି ଯାପନ । ମୁଁ ଏଥର ଏକ ଶୁଦ୍ଧପୂତ ଜୀବନ ଯାପନ କରିବି ତମପରି ! ଏପରିକି ମୋତେ ଲୋକମାନେ ଗୀର୍ଜାରେ ଧର୍ମଯାଜକ

କରିବାକୁ ନିମନ୍ତ୍ରଣ କରିବାକୁ ଆସିବେ । କିନ୍ତୁ ହାୟ ! ସନ୍ଧ୍ୟାରେ ଆସନ୍ତି ଅନେକ ତାରା, ଝରାପତ୍ରର ମର୍ମର ଓ ବିଗହଞ୍ଚା ଚୈତ୍ରର ନିମନ୍ତ୍ରଣ । ତା'ତ ପ୍ରତ୍ୟାଖ୍ୟାନ କରି ହୁଏନା । ମୁଁ ଗୋଟିଏ କଥା ନିଶ୍ଚିତ ଜାଣେ ଯେ, ଯେ କୌଣସି 'ମାଟାର୍' ପରି ମୋର ମାଂସ, ହାଡ ଓ ତ୍ୱକ୍, ସମସ୍ତ ଅସ୍ତିତ୍ୱ ଶ୍ମଶାନରେ ମିଶିଯିବ । ଆଉଥରେ ମୁଁ ମଣିଷ ହେଇ ଜନ୍ମ ନେବି, ଏ ଗ୍ୟାରେଣ୍ଟି ମଧ ନାହିଁ । ମୋକ୍ଷ ମିଛ, ନିର୍ବାଣ ଧପ୍‌ପାବାଜି ଆଉ ପୁନର୍ଜନ୍ମ ! ଫୁଃ, ସିଏ ଏକ ଫିକ୍‌ସନ୍ । ତେଣୁ କହ କେଉଁ ସ୍ୱର୍ଗର ଆଶାରେ ମୁଁ ଦୁଆର ମୁହଁରୁ ଫାଲଗୁନକୁ ଲେଉଟେଇ ଦେବି ? ଅତଏବ ମୁଁ ଅନିବାର୍ଯ୍ୟଭାବରେ ଏକ ଅସହାୟ ପକ୍ଷୀଶାବକ ପରି ଅଭ୍ୟାସର କବଳିତ ହେଇଚି ଏବଂ ଜୀବନକୁ ଆହୁରି କ୍ଷିପ୍ର ଓ ତ୍ୱରାନ୍ୱିତ କରିବାକୁ ବେହୋସ୍ ହୋଇଚି ପ୍ରତିଟି ସଂଧ୍ୟାରେ ଏବଂ ପ୍ରତିଟି ଅନୁତାପ-ଦଗ୍ଧ ସକାଳରେ । ମୁଁ ସ୍ପଷ୍ଟ ଦେଖୁଚି ଯେ କାଚର ପାତ୍ରରୁ ବୟସର ବାଲି ଝରି ଚାଲିଚି ଅବିରତ ।

ତମେ ଆସ । ନ ହେଲା ବା ଚୈତ୍ରରେ । ତମର ସାନ୍ନିଧ ଜୀବନର ଏଇ ଅଗ୍ନିପିଙ୍ଗଳ ବୈଶାଖକୁ ହୁଏତ ଅନେକଟା ଶୀତଳ କରିବ ।

ହୁଇସ୍କି ମୋର ପାକସ୍ଥଳୀରେ ଆଘାତ କରି ମୋର ଅସଂଖ୍ୟ ଶିରା ପ୍ରଶିରାରେ ଏକ ମସୃଣ, ବିଷାକ୍ତ ସାପ ପରି ଉପରକୁ ଉଠୁଚି ଆସ୍ତେଆସ୍ତେ । ଆଉ ଅଳ୍ପ ସମୟ ପରେ ମୁଁ ପୃଥିବୀର ସମସ୍ତ ଯନ୍ତ୍ରଣା ବିସ୍ମୃତ ହେବି । ଏପରିକି ମୁଁ ଭୁଲିଯିବି ଯେ ମୁଁ ତମକୁ ଅପେକ୍ଷା କରିଛି । ଯେ ଅନାଗତ, କିନ୍ତୁ ସେ ପୁଣି ଅନ୍ୟ ଏକ ନୂତନ ଯନ୍ତ୍ରଣାର ପ୍ରସ୍ତୁତି ।

ମୋର ମନେ ପଡ଼ିଯାଇପାରେ ମୁଁ ତମକୁ ଦିନେ ଆବିଷ୍କାର କରିଥିଲି ଜଣେ ଦୁଃସ୍ଥ ଆଇନ୍‌ଜୀବୀର ଭଡାଘର ଛାତ ଉପରେ ଏବଂ ତା'ପରେ ବହୁଦିନୁ ପଛରେ ପକେଇ ଆସିଥିବା ବସନ୍ତର ଗ୍ରଛ ତା'ର ଅନେକ ଅନେକ ସୁନେଲୀ ପୃଷ୍ଠା ମୋ ସାମ୍ନାରେ ମେଲି ଧରିପାରେ । କ'ଣ ଥିଲା ସେଦିନର ସେଇ ପ୍ରଥମ କବିତା..... ? ଅନେଷ୍ଟଲି, ମୋର ମନେପଡୁ ନାହିଁ ।

ତମେ ଆସ । ଆମେ ଆଉ ଥରେ ହୁଏତ ସେଦିନର କବିତା ପଢ଼ିବା । ପୁଣି ଥରେ ସ୍ମରଣ କରି ପାରିବା କ'ଣ ଥିଲା ସେ କବିତାର ପ୍ରଥମ ଚରଣ । ହଠାତ୍ କାହିଁକି ଏତେ କମ୍ ହେଇଗଲା ଘରର ଆଲୁଅ ? କେଉଁଠାରୁ ଗୋଟାଏ ଅସ୍ପଷ୍ଟ ଚାପା ଶବ୍ଦ ବାହାରୁଚି । ପ୍ରତିବେଶୀର ରେଡ଼ିଓରେ ବୋଧହୁଏ ଦୁଇଟା ଷ୍ଟେସନ୍ ଓଭରଲ୍ୟାପ୍ କରୁଚି । ଅନେକ ଦୂରରେ ବୋଧହୁଏ ଗୋଟାଏ ରେଳର ଇଞ୍ଜିନ୍ ବୋଝେଇ ଡ଼ବା ଗୁଡ଼ାକ ଟାଣି ନ ପାରି ଅଣନିଶ୍ୱାସୀ ହେଇ ଧସେଇ ପଡୁଚି ।

କିନ୍ତୁ ମୁଁ ଯେ କ'ଣ ଦେଖୁଚି ? ମାୟାମୃଗ ନା ମୃଗତୃଷ୍ଣା ? ମୁଁ ପୁରାଣରେ ପଢ଼ିଚି ସୂର୍ପଣଖା ଆସିଥିଲା ଲକ୍ଷ୍ମଣଙ୍କୁ ପ୍ରଲୁବ୍ଧ କରିବାକୁ । ଶୁଣିଚି ବିଷ୍ଣୁ ମୋହିନୀ ରୂପ ଧରିଥିଲେ ଅମୃତ ବାଣ୍ଟିବାକୁ, ଶୁଣିଚି ଇନ୍ଦ୍ରଦେବ ଏକ ଭିକ୍ଷୁକ ଦରିଦ୍ର ବ୍ରାହ୍ମଣ ବେଶରେ ଆସିଥିଲେ କର୍ଣ୍ଣର ରକ୍ଷାକବଚ ଅପହରଣ କରିବାକୁ; କିନ୍ତୁ କାହିଁକି କି ଉଦ୍ଦେଶ୍ୟରେ ତମର ରୂପଧରି କିଏ ଆସିଲା ମୋ ପାଖକୁ ? ଏ କଥା କ'ଣ ସମ୍ଭବ ଯେ ତମେ ମୋରି ଆଖି ସାମ୍ନାରେ ଏଇ ଉଜ୍ଜ୍ୱଳ ଆଲୋକ ତଳେ ବସି ରହିବ ଚୁପ୍‌ଚାପ୍ ହୋଇ ! କ'ଣ ହେଇଚି ତମର; ତମେ କଥା କହୁ ନାହଁ କାହିଁକି ?

ତମେ ବୋଧହୁଏ ମନେ ମନେ ଭାବୁଚ ମୁହଁ ଉପରକୁ ଝଲକାଏ ରକ୍ତ ଉଠିଆସିଚି । ତମର ଛାତିର ଟ୍ରାପିଜିୟମ୍ ଉପରେ ଲାଲ୍ କାନଫୁଲଟା ରକ୍ତପରି ଝରୁଚି । ପ୍ରବଞ୍ଚନାର ରକ୍ତ !

କିନ୍ତୁ ସୁଜାତା ! ଯାହା ତମର ଇଚ୍ଛା କହ; କିନ୍ତୁ ଏଇ କେତୋଟି ଦୁର୍ଲଭ ମୁହୂର୍ତ୍ତ ନୀରବ ରୁହନା ତମେ । କିଛି ହେଲେ କହ ! ସମ୍‌ଥିଙ୍ଗ ପ୍ଲିଜ୍, ପ୍ଲିଜ୍ ସୁଜାତା !

ଆଲୁଅର ଭୋଲ୍‌ଟେଜ୍ ଫ୍ଲକ୍‌ଚୁଏଟ୍ କରୁଚି । କାରଣ ତମେ ଦେଖାଯାଉଛ କେତେବେଳେ ନାଲି-କଇଁ ପରି ଆରକ୍ତ ପୁଣି କେତେବେଳେ ଖଣ୍ଡେ ସାବୁନ୍ ପରି ଶ୍ୱେତା, ରକ୍ତହୀନ; କିନ୍ତୁ ତମେ ନିର୍ବୋଧ ନାରୀ, ତମେ ଆଉ ମୋର ଜୀବନ ଓ ମନ ନେଇ ଖେଳ ଖେଳି ପାରିବନାହିଁ । ତମର ବୁଝିରଖିବା ଉଚିତ୍ ଯେ ଏଇ ବିରାଟ ଘରଠାରେ ତମେ ଆଉ ମୋ ଭିନ୍ନ କେହି ନାହିଁ । ମୁଁ ସେଦିନର କୋମଳମତି ନିର୍ବୋଧ ଶଙ୍କିତ-ଚିତ୍ତ ବାଳକ ନୁହଁ ଯିଏ ତମର କାନ ପାଖରେ ମୃଦୁ ଗୁଞ୍ଜରଣ କରି କହିବ, 'ମୁଁ ତମକୁ ଭାରି ଭଲପାଏ ସୁଜାତା ! ମତେ ବିଶ୍ୱାସ କର ।' ତମର କେଜାଣି ମନେ ଥିବ ବହୁଦିନ ତଳେ ମୁଁ ତମ ପାଖରେ ଗୋଟିଏ ଛୋଟ 'ବିଶ୍ୱାସ' ଛାଡ଼ିଯାଇଥିଲି ଏବଂ ମୁଁ ମୂର୍ଖ ଫେରି ଆସି ମାଗିଲା ବେଳେ ତମେ ହସି ଦେଇ କହିଥିଲ, 'ମୋ ପାଖରେ ଥିଲା, କିନ୍ତୁ କାଳକ୍ରମେ ତାହା ଫୁସ୍ ଫୁସ୍ ରଙ୍ଗର ବମ୍ଫେ ମିଠେଇ ପରି ମିଳେଇ ଗଲା ଆମ ସାହୀର ପାଣି ଆଉ ପବନରେ ।'

ମୁଁ ଆଜି କିନ୍ତୁ ପୂରାପୂରି ସିଜନ୍‌ଡ । ମୋର ମାଇନର୍ ଭାଇସ୍ କିଛି ନାହିଁ । ମୁଁ ଗୋଟାଏ ପଶୁ, ଯେ ମନୁଷ୍ୟର ପାସ୍‌ପୋଟ୍ ଜାଲ୍ କରି ମନୁଷ୍ୟ ଜାତି ସହିତ ସମାଜରେ ବସବାସ କରୁଛି । ତମର ସତୀ ସାବିତ୍ରୀ ହବାର ହୁଇମ୍‌କୁ ମୁଁ ଚରିତାର୍ଥ କରି ନ ପାରୁଥିବାରୁ ମୁଁ ସତରେ ଦୁଃଖିତ । ତମ ମୋ ଭିତରେ ଗୋଟିଏ ନାତିପ୍ରଶସ୍ତ ଡାଇନିଂ ଟେବୁଲର ଦୂରତ୍ୱ ମୁଁ ଅକ୍ଳେଶରେ ଭାଓଲେଟ୍ କରି ପାରିବି ଓ ତାପରେ ମୁଁ ତୁମକୁ ବୁଝେଇଦେଇ ପାରିବି ଯେ' ତମେ ତମର ନିର୍ବୋଧ ଅମରାବତୀଠାରୁ ସମାନ ଦୂରରେ ତଥାପି ରହିଛ ।

କିନ୍ତୁ ଏ ପୁଣି କ'ଣ ହେଲା ? ମୁଁ ଯେ ହାତ ବଢେଇ ତମକୁ ଛୁଇଁ ପାରୁ ନାହିଁ । ତମେ ମୋର ଏତେ ନିକଟରେ ବସି ରହି ସେଇ ଭୁବନମୋହିନୀ ହସ ହସୁଚ, ଅଥଚ ମୁଁ ଗୋଟାଏ କ୍ଷୁଧାର୍ତ୍ତ ପଶୁ ପରି ଯନ୍ତ୍ରଣାରେ ଛଟପଟ କଲେ ମଧ୍ୟ ଏଇ ନିକଟତମ ଦୂରତ୍ୱକୁ ଅତିକ୍ରମ କରି ତମକୁ ସ୍ପର୍ଶ କରି ପାରୁନାହିଁ । ମୁଁ ସ୍ପଷ୍ଟ ଦେଖି ପାରୁଛି ଅଥଚ ଶୁଣି ପାରୁ ନାହିଁ କି ଛୁଇଁ ପାରୁନାହିଁ । ମୁଁ ତୁମକୁ କ'ଣ ଦେଖୁଚି ଟେଲିଭିଜନ୍‌ରେ ? ମୁଁ ପାରୁ ନାହିଁ ସୁଜାତା ! କୌଣସିମତେ ପାରୁନାହିଁ । ହୁଏତ ତମ ମୋ ଭିତରେ ଠିଆ ହୋଇଚି ଗୋଟାଏ କାଚର ପାଚିରୀ ଯାହାକୁ ଅତିକ୍ରମ କରାଯାଏ ନା । ମୋର ରକ୍ତବାହୀ ଧମନୀ ସବୁ ଉତ୍ତେଜନାରେ ସ୍ଫୀତ ହେଇ ଉଠିଲେଣି ; କିନ୍ତୁ ତଥାପି ସେଇ ନୀଳ ବିଷଧର ସର୍ପ ମୋର ମୁଣ୍ଡ ଭିତରେ ଗରଳ ଢ଼ାଳୁଚି ।

ସଂଧ୍ୟା ଉତ୍ତୀର୍ଣ୍ଣ ହେଇଗଲାଣି ଅନେକ ବେଳୁ । ମୁଁ 'ସୁପ୍'ର ଗନ୍ଧ ମୃଦୁ ଭାବରେ ଆଘ୍ରାଣ କରି ପାରୁଚି ଏବଂ ଦେଖିପାରୁଚି ଯେ ସାଲାଡ୍ ପ୍ଲେଟ୍ ଉପରେ ଅନେକ ପଳାଶ, ସେବତୀ ଓ ରାଧାତମାଳକୁ ବିକଳାଙ୍ଗ କରି ବିଚିତ୍ର ରଙ୍ଗ ତିଆରି କରାଯାଇଛି । ଶୂନ୍ୟଗର୍ଭା ଚାମୁଚମାନଙ୍କର ଉତ୍କଣ୍ଠା ମୁଁ ବୁଝୁଚି ଓ ବୁଝୁଚି ଯେ ନିୟତିର ନିଷ୍ଠୁର ଆଙ୍ଗୁଠି ପରି କଣ୍ଟା ଚାମୁଚମାନେ ମତେ ଉପହାସ କରୁଛନ୍ତି । ଚୂନ ପରି ଧଳା ଟେବୁଲ୍ କ୍ଲଥ ଉପରେ ତଥାପି ଝରି ଚାଲିଛି 'କାନା'ର ରକ୍ତ ଓ ତମେ ଟେବୁଲର ଆରପଟେ ବସି ରହି ହସୁଚ ସେଇ ଭୁବନମୋହିନୀ ହସ ।

ମୋର ଦୁଇ ପାପୁଲି ଓ କପାଳ ଶୀତଳ କାଚର ପାଚେରୀର ସ୍ପର୍ଶରେ ନିର୍ବେଦ୍ ହେଇ ଆସୁଛନ୍ତି ଆସ୍ତେ ଆସ୍ତେ । ରାତିର ତାରାମାନେ ବାହାରେ ଜଳୁଛନ୍ତି ତମର ଆଖିପରି—

ତମର
ଅନୁଗୃହୀତ
ମୁଁ

# ଦଶମୀ

ରେଲ୍‌ଓ୍ୱେଷ୍ଟେସନ
ଜୁନ୍

ଅବିସ୍ମରଣୀୟା

ଏକତରଫା ଚିଠି ଲେଖାରେ ମୁଁ ଧୀରେ ଧୀରେ ଏତେ ଅଭ୍ୟସ୍ତ ହୋଇଗଲିଣି ଯେ, ତମଠାରୁ ଅକାଳେ ସକାଳେ ଖଣ୍ଡେ ଅଧେ ଚିଠି ପାଇବାର ପ୍ରତ୍ୟାଶା ମଧ ଆଉ ନାହିଁ । ମୋଟ ଉପରେ ତମର ଚିଠି ପାଇବା ନପାଇବା ମୋ' ପାଇଁ ଆଜି ଆଉ ମ୍ୟାଟର୍‌ଇ କରେନା । ଦିନେ ଯେ ମୁଁ ସାଇକେଲ ଚଢି ଯାଇ ପୋଷ୍ଟ ଅଫିସରେ ଗୋଡର ଦୁଇ ବୁଢ଼ା ଆଙ୍ଗୁଠି ଉପରେ ଠିଆ ହୋଇ ବେକକୁ ଯଥା ସମ୍ଭବ ଲମ୍ବା କରି, ଗୋଟାଏ ନାତିପ୍ରଶସ୍ତ ଗବାକ୍ଷ ଦେଇ, କ୍ଷିପ୍ର ଗତିରେ ମୋହର ପିଟାହେଇ ଯାଉଥିବା ଚିଠିଗୁଡ଼ିକ ଭିତରୁ ତମର ହସ୍ତାକ୍ଷରକୁ ଅପଲକ ଆଖିରେ ଚାହିଁ ରହୁଥିଲି, ସେକଥା ମୁଁ ଗଛର ଦିନଗୁଡ଼ିକ ପରି ପୂରାପୂରି ଭୁଲିଯାଇଛି ।



ଏଇ ଛୋଟ ଷ୍ଟେସନର ଇଜି ଚେୟାର୍‌ରେ, କୌଣସି ଏକ ସମୟ କଟୁ ନଥିବା ଅପରାହ୍ନରେ ବସି ବସି ଗୋଟାଏ ମଜାର ଖେଳ ଖେଳେ । ମନେ ପକେଇ ପକେଇ ଅତୀତକୁ ମୋର ପାକସ୍ଥଳୀରୁ ଓଟାରି ଆଣି ବସି ବସି ପାକୁଳି କରେ । ସେଥିପାଇଁ ଆହୁରି ଅନେକ ଅନେକ କଥା, ଯାହା ମୋର ସମ୍ପୂର୍ଣ୍ଣ ବିସ୍ମରଣ ହେଇଯିବା ଉଚିତ୍, ତାହା ଏବେ ମଧ ମୋର ସ୍ମରଣ ରହିଛି । ସ୍ମୃତିର ଅନେକ ଅନାବନା ଜଙ୍ଗଲ ଭିତରୁ ଗୋଟାଏ ଦୁଇଟା ଉଦାହରଣ ଦଉଚି । ଏବେକାର ଷ୍ଟାଟିଷ୍ଟିକ୍‌ସ୍‌ର ଭାଷାରେ ଯାହାକୁ କୁହାଯାଏ ରାଣ୍ଡାମ୍ ସାମ୍ପ୍‌ଲିଂ ।

କିଏ ତମକୁ କହିଥିଲା ସେଦିନ ଗୋଟାଏ ପୁରା ଠୁଙ୍ଗା ଭର୍ତ୍ତି ଅବିର ମୋ' ମୁହଁରେ ଓଜାଡ଼ି ଦେବାକୁ ? ମୋର ଆଖି

ଭିତରୁ ଅବିର ଧୋଇ କାଢ଼ିବା ପାଇଁ ପୂରା ଗୋଟାଏ ଦିନ ଲାଗିଲା । ସେଦିନ ଗୁରୁଜନମାନଙ୍କର ଭର୍ତ୍ସନା ଫଳରେ ଦୁଇଟି ଆପାତଃ ମୂଲ୍ୟବାନ୍ ଜିନିଷ ଶିଖିବାକୁ ମିଳିଥିଲା । ପ୍ରଥମ, ଅବିର ହେତୁ ଥଣ୍ଡା ହବାର ଆଶଙ୍କା ଅଛି ଓ ତାହା ଆଖି ଭିତରେ ପଡ଼ିଲେ ବେଶ୍ ବିପଜ୍ଜନକ । କିନ୍ତୁ ଏଇ ପ୍ରଥମଟି ଅପେକ୍ଷା ଦ୍ୱିତୀୟ ଶିକ୍ଷାଟି ଆମପାଇଁ ଅଧିକ ଗୁରୁତ୍ୱପୂର୍ଣ୍ଣ ଥିଲା । ଅର୍ଥାତ୍ ତମେ ଏପରି ଏକ ବୟଃସନ୍ଧିରେ ଆସି ପହଞ୍ଚିଚ, ଯେତେବେଳେ ତମେ ତମର ସାହି ଛାଡ଼ି; ବିଚ୍ ଦାଣ୍ଡ ଉପରେ ଗୋଟାଏ ଘୋଡ଼ି ପରି ଦଉଡ଼ି ଦଉଡ଼ି ଆସି ମୋ ସାହିରେ ମୋ' ଉପରେ ଅବିର ପକେଇବା ଏକ ଅମାର୍ଜନୀୟ ଅପରାଧ । ସେଦିନ ବୋଧହୁଏ ମୁଁ ପ୍ରଥମଥର ପାଇଁ ଜାଣିପାରିଥିଲି, ପ୍ରାପ୍ତବୟସ୍କା ନାରୀମାନେ କାହିଁକି ଫ୍ରକ୍ ପିନ୍ଧନ୍ତି ନାହିଁ । ସେଦିନ ସଂଧ୍ୟା ହେଲାନାହିଁ । ଦିନର ଶେଷ ଆଲୁଅ ମିଳେଇଯିବା ପୂର୍ବରୁ ଆମ ଗାଁର ଆକାଶ ରୂପାପରି ଧଳା ଧଳା ଆଲୁଅରେ ଜଳିଉଠିଲା । ମୁଁ ପକେଟ୍ ଭର୍ତ୍ତି ମଲ୍ଲୀଫୁଲ ଧରି ତମ ଘର ପାଖର ଗୋଟାଏ ଅନ୍ଧାରିଆ ଜାଗା ଦେଖି ଛପି ଛପି ଯାଉଥିଲି । ତମ ବାପାଙ୍କର ଭାରି ଗଳା ଶୁଭିଲା, 'କିଏ ସେଠି ଯାଉଚ ?' ମୋର ଗୋଡ଼ ଦି'ଟା ଥମ୍‌କିନା ରହିଗଲା । କିଛି ଅନ୍ଧାର, ମୋ' ନିଜର ଚଞ୍ଚଳ ଗତି ଏବଂ ସର୍ବୋପରି ତମ ବାପାଙ୍କର କ୍ରମକ୍ଷୟିଷ୍ଣୁ ଦୃଷ୍ଟିଶକ୍ତିର ସୁଯୋଗ ନେଇ ସେଦିନ ଯେ କାହିଁକି ପଳାଇ ଯାଇ ନ ପାରିଲି, ସେଥିପାଇଁ ଜୀବନରେ ବହୁବାର ଅବଶୋଷ କରିଛି ।

ଦେଉଳର ଆଳତି ବୋଧହୁଏ ସଦ୍ୟ ସରିଥିଲା । ସଂଧ୍ୟା ସାଢ଼େ ଛଅଟା ସାତଟା ବେଳେ ତମ ସାହିରେ ପକେଟ୍ ଭର୍ତ୍ତି ମଲ୍ଲୀଫୁଲ ଧରି ସେଦିନ ଯେଉଁ କିଶୋର ତମ ବାପାଙ୍କ ଆଖି ସାମ୍ନାରେ ସଂପୂର୍ଣ୍ଣ ନିରସ୍ତ୍ର ହେଇ ଅଧୋବଦନରେ ଠିଆହେଇ ରହିଥିଲା, ସେ' କିଶୋରଟି ଅନେକ ଦିନରୁ ମରିଗଲାଣି । ତମର ଘର ପାଇଁ ଏବଂ ତମର ସାନ୍ନିଧ ପାଇଁ ସବୁବେଳେ ମନର ଅନ୍ତରାଳରେ କିଛି କିଛି ସଙ୍କୋଚ ଥିଲା । କିନ୍ତୁ ସେଦିନ ଏକ ପ୍ରକାଶ୍ୟ ଘୋଷଣା କରାଗଲା ଯେ ମୁଁ ତମର ଘର ବା ସାହି ବାଟଦେଇ ଯାଇପାରିବି ନାହିଁ । ମୋର କିଛି ହେଲେ ଅପରାଧ ଥିଲାପରି ମୁଁ ମନେ କରିପାରୁ ନାହିଁ । ଯଦି କାହାର କିଛି ଅପରାଧ ଥିଲା, ତାହା ଥିଲା ଆକାଶରେ ଉଇଁଥିବା ଜହ୍ନର ଏବଂ ସ୍ଫଟିକ ପରି ଫୁଟିଥିବା ମଲ୍ଲୀ ଫୁଲର ।

ତମର ମନେଅଛି ହେମାଙ୍ଗିନୀ ମାଉସୀକୁ ? ବଡ଼ ଆଦର କରେ ସେ' ଆମମାନଙ୍କୁ । ଆଦର ନ କରି ତା'ର ବା ଅନ୍ୟ କଅଣ ଉପାୟ ଥିଲା ? ଆମ ଉଭୟଙ୍କର ଏକୁଡ଼ିଶାଳରେ ସିଏ ଥିଲା ଧାଇ । ହେମାଙ୍ଗିନୀ ମାଉସୀର ଆଦର ଆଉ ତା'ର ଏକୁଟିଆ ଘରର ସୁଯୋଗ ଆମେ ନେଇଛେ ବହୁବାର । କଅଣ ବା' ଆମର ଗପ କରିବାର ଏତେ ଥାଏ ? ତା'ର ଗୋଟାଏ ବର୍ଣ୍ଣ ମଧ ମୋର ଆଜି ମନେ

ପଢୁନାହିଁ । ତେବେ ଅନୁମାନ କରାଯାଏ ଯେ ମୁଁ ତମର ଥଣ୍ଡା, ସଫା ଛୋଟ ପାପୁଲିଟିକି ହାତଭିତରେ ଧରି ରଖି ବାରମ୍ବାର କହୁଥିବି ଯେ ତମେ କେତେ ସୁନ୍ଦର ବା ମୁଁ ତୁମକୁ କେତେ ଭଲପାଏ । ତମେ ବି ବୋଧହୁଏ କହୁଥିବ ଯେ ମୋର କିଛିଦିନ ଅଦର୍ଶନରେ ତମକୁ ତମର ଘର ବିଷତୁଲ୍ୟ ମନେହେଉଚି, ଇତ୍ୟାଦି, ଇତ୍ୟାଦି । ବୋଧହୁଏ ସେଇ ଏକା କଥାର ପୁନଃପୌନିକତା । ହଏତ କିଛି ବିନିଦ୍ର ରଜନୀ, ହଏତ ଢକେଇ ଆସୁଥିବା ଆଖିକୁ ଟିକେ ପୋଛିନେବା, ବା ନହେଲେ ଗଉଡୁଣୀ ହାତରେ, ଛୁଞ୍ଚି, ସୂତା, ଗନ୍ଧକର୍ପୂର ବିକୁଥିବା ଲୋକହାତରେ କେଇଖଣ୍ଡ ଚିଠିର ବିନିମୟ । ଆଜି ସେକଥା ଭାବିଲେ ହସ ମାଡ଼େ । କୈଶୋର ଓ ମୂର୍ଖତା ବୋଧହୁଏ ଏକାର୍ଥବୋଧକ ଶବ୍ଦ ।

ଏହିପରି କେତେ ଉଦାହରଣ ମୁଁ ଦେଇପାରେ, କାରଣ ମୁଁ କିଛି ବର୍ଷ ଧରି ସ୍ମୃତି ସାଙ୍ଗରେ କ୍ରମାଗତ ଲୁଚୁକାଳି ଖେଳୁଚି । ଆମ ଗାଆଁ ମନ୍ଦିରର ଟ୍ରଷ୍ଟିମାନଙ୍କର ଗୋଟାଏ ସଭା ଡକାଯାଇଥିଲା ମନ୍ଦିର ବେଢାରେ । ମୁଁ ଯାଇଥିଲି ସେଠିକି । ମନ୍ଦିରର ଆୟବ୍ୟୟ, ପୂଜକ ଓ ଅତିଥି ଅଭ୍ୟାଗତମାନଙ୍କର ସମସ୍ୟାର ଆଲୋଚନା ଖୁବ୍ ଜୋର୍ ସୋର୍‌ରେ ଚାଲିଥିଲା ବେଳେ ମୁଁ ହଠାତ୍ ଅନ୍ୟମନସ୍କ ହେଇପଡ଼ିଥିଲି ଏବଂ ଭାବୁଥିଲି ମନ୍ଦିରର ରୂପାର ଚୂଡାରେ ସେଦିନ ଉଦୁଉଦିଆ ଦି'ପହରେ ଖଣ୍ଡେ କଲମ କ୍ରାସ୍ ଧରି ତମର ଓ ମୋର ନାଁଆ ଯେ ଖୋଳିଥିଲେ ତା' ଏପର୍ଯ୍ୟନ୍ତ ଭାସ୍ୱର ରହିଚି ନାଁ ମଳିନ ପଡ଼ିଆସଲାଣି । ଭାରି ଇଚ୍ଛା ହଉଥିଲା ଜାଣିବାକୁ । ସେଇ ଦିନ ରାତିରେ ଆସି ଖଣ୍ଡେ ଟର୍ଚ୍ଚ ଧରି ଦେଖିଥିଲେ ଅବା ଜାଣି ହୁଅନ୍ତା । କିନ୍ତୁ ଧରା ପଡ଼ିଯାଇଥିଲେ କି ଅବସ୍ଥାଟା ଯେ ହେଇଥାଆନ୍ତା, ତା' ଠିକ୍ ଠିକ୍ ବର୍ଣ୍ଣନା କରିହବ ନାହିଁ । ତା' ଆରଦିନ ସାରା ଗାଆଁ ଆଉ ଆଖପାଖର ଚାରିପାଞ୍ଚଖଣ୍ଡ ଗାଆଁରେ ହୁରି ପଡ଼ିଯାଇଥାନ୍ତା ଯେ ମଧୁପୁର ଷ୍ଟେସନର ଦରବୁଢ଼ା ଷ୍ଟେସନ୍‌ମାଷ୍ଟର୍ ବୋଧହୁଏ ପାଗଳ ହୋଇଗଲାଣି ।

ତମେ ଏ ସମ୍ବାଦ ନିଶ୍ଚୟ ଜାଣି ନ ଥିବ ଯେ, ମୁଁ ପ୍ରାୟ କୋଡ଼ିଏ ବର୍ଷ ହେଲା ଆମ ଗାଆଁର ଷ୍ଟେସନ୍ ମାଷ୍ଟର୍ । କିନ୍ତୁ ବିଶ୍ୱାସ କର, ଏଠି କିଛି ବଦଳି ନାହିଁ । ଷ୍ଟେସନ୍ ପଛପଟେ ଯୋ' ଗୋଟାଏ ପ୍ରକାଣ୍ଡ ବରଗଛ, ଯାହାର ଛାଇରେ ଗାଆଁର ସବୁ ଶଗଡ ଫିଟେ, ସେ ବରଗଛ ଏବେ ବି ଅଛି, ଏବେ ବି ସେଠି ଶଗଡ଼ ଫିଟୁଛି । ଅନେକ ଦିନ ହେଲା ତମ ସନିଆ ଶଗଡ଼ିଆକୁ ଦେଖି ନାହିଁ । ଓଃ ! ସେଦିନ କଥା ମନେପଡ଼ିଲେ ଏବେ ବି ହସି ହସି ପେଟ ଫାଟିଯାଏ । ତମ ଦାଦାଙ୍କ ପାଖକୁ ଯାଉଥାଅ ନାଁ କଅଣ ତମେ । ମୁଁ ଠିଆ ହେଇଥାଏ ଗାଆଁ ମୁଣ୍ଡ ପୋଖରୀ ପାଖରେ । କେତେ ନେହୁରା ନ ହେଇଚେ, କେତେ ଲାଞ୍ଚ ନ ଦେଇଚେ ତମ ସନିଆକୁ ଆମ ଦି' ଜଣଙ୍କୁ

ଏକାଠି ଶଗଡ଼ରେ ନେଇ ଯିବାପାଇଁ ଏବଂ କଥାଟାକୁ ଗୋପନ ରଖିବା ପାଇଁ ! ସେଦିନ ପୋଖରୀ ସାରା ଅନେକ ନିର୍ଲ୍ଲଜ ଭାଇ କଇଁଫୁଲ ତାଙ୍କ ଆଖିରେ ବଡ ବଡ ପାଖୁଡ଼ା ଖୋଲି ଆମକୁ ଚାହିଁ ଥାଆନ୍ତି । ଗାଆଁ ଠାରୁ ଷ୍ଟେସନ୍, ସେଇ ଦେଢମାଇଲ୍ ରାସ୍ତାପାଇଁ ଆମ ହାତରେ ସ୍ୱର୍ଗରୁ ଖଣ୍ଡେ ଛିଣ୍ଡିପଡ଼ିଥିଲା ଯେମିତି ।

ଆଜି ସେଇ ବରଗଛ ଉପରେ ଆସନ୍ନ ସଂଧ୍ୟାରେ ଅନେକ ପାତିଶୁଆ କିଚିରିମିଚିରି କରୁଛନ୍ତି । ସେଇ ଭଙ୍ଗା ଶଙ୍ଖ ପାଖରେ ଯୋଉ ଡେଙ୍ଗା ନଡ଼ିଆ ଗଛଟା ଥୁଣ୍ଟା ହୋଇ ଠିଆ ହୋଇଥିଲା, ସେ'ଟା ଏବେ ବି ଠିଆ ହୋଇଛି । ଆମ ଗାଆଁରେ କିଏ ନ ଜାଣିଚି ଚଡକ ପଡ଼ି ତା'ର ସବୁ ବାହୁଙ୍ଗାଗୁଡାକ ଜଳି ଯାଇଥିଲା ବୋଲି ?

ଏମିତି ଅନେକ ଅନେକ କଥା ମନେଅଛି । ମନେଅଛି ମୁଁ ଦେଢମାସ ପାଇଁ ମାମୁଁ ଘରକୁ ଯାଇଥିଲି । ଗାଆଁ ପାଖରେ ତମର ଦୁଇଟି କପୋଳକୁ ମୋର ଦୁଇ ହାତରେ ଟୋକିଧରି କହିଥିଲି, 'ମୁଁ ଶୀଘ୍ର ଫେରି ଆସିବି । ମତେ ତମ ମନରୁ ଅନ୍ତର କରିଦେବ ନାହିଁ' । କିନ୍ତୁ କଅଣ ହେଲା ? ମୁଁ ଫେରିଆସଲା ବେଳକୁ ତମେ ଯେ କୁଆଡେ ଗଲ ମତେ ଗାଆଁରେ କେହି ଲୋକ କହିପାରିଲେ ନାହିଁ । ସନିଆକୁ ଆକବରୀ ଖାଁ ଗୁଡାଖୁ ଲାଞ୍ଚ ଦେଇ କେତେ ପଚାରିଛି, କେତେ ନେହୁରା ହେଇଛି, 'ସନିଆ ମଉସା କୁହ, ସୁଜାତା କୁଆଡେ ଗଲା ?' ସନିଆ ମଉସା ପେଚୁଆ ପେଚୁଆ ଆଖିକରି ଆକାଶକୁ ଚାହେଁ, ଆଉ ତା'ର ମୁଣ୍ଡ ହଲେଇବାରୁ ମୁଁ ବୁଝିପାରେ ଯେ ସେ ବି ଜାଣେନାଁ ତମେ ହଠାତ୍ କୁଆଡେ ଚାଲିଗଲ ।

ପ୍ରାୟ ଦଶ ବାର ବର୍ଷ ତଳେ କୋ'ଠି ଗୋଟାଏ ଇଂରେଜୀ କାଗଜରେ ବାହାରିଥିଲା ନାଁ କଅଣ, ମୁଁ ଜାଣେ ନାହିଁ । ମୁଁ ତା'ର ତର୍ଜମା ଓଡ଼ିଆ କାଗଜରୁ ପଢ଼ିଥିଲି । ତମେ ନାଁ କୋ'ଠି ଦକ୍ଷିଣ ଫ୍ରାନ୍ସର କେଉଁ ଦ୍ୱୀପର ଅଧିକାରୀ ଜଣେ କିଏ ମୋସିଓ ସେଁ ସାଁ କୁ ବିବାହ କରି ତମେ ଆଜି ମ୍ୟାଦାମ୍ ସେଁ ସାଁ । ତମେ କୁଆଡେ ଅପୂର୍ବ ରୂପବତୀ ଏବଂ ଏଇ ବିବାହ ଫଳରେ ତମେ ଅତୁଳନୀୟ ସମ୍ପତ୍ତିର ଅଧିକାରିଣୀ ହେଇଚ । ସେଇ ପ୍ରସଙ୍ଗରେ ଯା'ବି ଲେଖାଥାଏ ଯେ ତମେ ପ୍ରକୃତରେ ହଉଚ ଜଣେ ଭାରତୀୟ ନାରୀ, ଯାହାଙ୍କର ଜନ୍ମ ଓଡ଼ିଶାର ମଧୁପୁର ନାମକ ଏକ ଅଖ୍ୟାତ ପଲ୍ଲୀରେ । ସେ ଦିନର ସେ ସମ୍ବାଦରେ ମୁଁ ବିସ୍ମିତ ହେବା ଅପେକ୍ଷା ଆନନ୍ଦିତ ହୋଇଥିଲି ବେଶି । ଯଦିବା ଏକା ଗାଆଁରେ ଆମେ ନ ରହିପାରିଲୁ, ତଥାପି ଏଇ ପୃଥିବୀର କୌଣସି କୌଣସି ସ୍ଥାନରେ ଆମେ ତ ଅଛୁଁ । ତମେ ତ ଅନ୍ତତଃ ଖୁସିରେ ଅଛ । ମୋର ଅବଶ୍ୟ ବିଶେଷ କିଛି ଦୁଃଖ ନାହିଁ । ଯେମିତି କୌଣସି ତାରକା ବା ଉଲ୍‌କା କକ୍ଷଚ୍ୟୁତ ହେଲେ ବା ଚୈତ୍ରର କୌଣସି ଏକ ବିଶେଷ ଦିନର ଜହ୍ନ ବୁଡ଼ିଗଲେ ଦୁଃଖ ନ ଥାଏ, ଠିକ୍ ସେମିତି । ସେଇ ଲେଖାରେ ତମର ଠିକଣା ବି ଦିଆ

ହେଇଥିଲା । ତା'ପରେ ପରେ ମୁଁ ସେଇଠିକଣାରେ ଚିଠି ଆଜିପର୍ଯ୍ୟନ୍ତ ଲେଖୁଛି । ତମେ ଚିଠି ପାଅକି ନାହିଁ ମୁଁ ଜାଣେ ନାଁ । ତମର କଅଣ ଓଡ଼ିଆ ବର୍ଣ୍ଣମାଳା ଏକାବେଳେକେ ବିସ୍ମୃତ ହେଇଯାଇଥିବ ? କଟକ ନଗର, ଧବଳ ଟଗର, ଯା ତ ମନେଥିବ ? ମନେ ନିଶ୍ଚୟ ଥିବ ଯେ ଚିଠି ଶେଷରେ ଲେଖିବାକୁ ପଡ଼େ 'ମୋର ଭୂମିଷ୍ଠ ପ୍ରଣାମ ଗ୍ରହଣ କରିବ ଓ ଅନ୍ୟାନ୍ୟ ଗୁରୁଜନମାନଙ୍କୁ ଯଥାବିଧି ଜଣେଇଦବ' ।

ଆଉକିଛି ସମୟ ପରେ ଟ୍ରେନ୍ ଆସିବ । ମୋର କିଛି କାମ ନାହିଁ । ଏଇଟା ମେଲ୍ ଟ୍ରେନ୍ । ମେଲ୍, ଏକ୍ସ୍‌ପ୍ରେସ ଏ ସବୁତ ଆଉ ମଧୁପୁର ଷ୍ଟେସନ୍‌ରେ ଅଟକନ୍ତି ନାହିଁ । ସେ ଖଲାସୀ ଗୋଇବେତ ଦିହରେ ଲୁହାର ଗୋଲକ ରଖି ନିଆଁ ହୁଳା ଦେଖେଇ ଠିଆ ହୁଏ । ଆଉ ମେଲ୍ ଇଞ୍ଜିନ୍‌ର ଖଲାସୀଟା ଟିକିଏ ନଇଁପଡ଼ି ବେତଟାକୁ ହାତ ଭିତରେ ଗଳେଇ ଦେଇ ପଳେଇ ଯାଏ । ତା'ପରେ ଗୋଟାଏ ବିକଟ ହ୍ୱିସିଲ୍ । ପାଇଲି, ପାଇଛି, ଲାଇନ୍ କ୍ଲିଅର୍ ନମ୍ବର ପାଇଛି । ମାଲ୍ ଗାଡ଼ିଗୁଡ଼ାକ ବି ଏଠି ରହେନାଁ । ମଧୁପୁର ଷ୍ଟେସନ୍‌ରେ କଅଣ ବା ମାଲ୍ ପାର ଉତାର କରିବ ? ନାଲି ନାଲି ଇଟା ରଙ୍ଗର ଡବା ଗୁଡାକ ଗୋଟାକ ପଛରେ ଗୋଟାଏ ଶୃଙ୍ଖଳିତ ସୈନିକ ପରି ଗଡ଼ି ଗଡ଼ି ଚାଲିଯାଆନ୍ତି । କିନ୍ତୁ ଦେଖିଲେଇ ବୁଝାଯାଏ ଯେ, ମାଲ୍ ଗାଡ଼ିଗୁଡ଼ାକ ଗୁରୁ ନିତମ୍ବିନୀ, ଧୀରେ ଧୀରେ ଧସେଇ ଧସେଇ ଚାଲନ୍ତି । ଦିନ ଭିତରେ ଅପ୍ ଡାଉନ୍ ହେଇ ଦି'ଟା ପାସେଞ୍ଜର ଗାଡ଼ି, ନ ହେଲେ ଗୋଟାଏ ଦି'ଟା ସଟ୍‌ଲ୍ । ଦିନ ଭିତରେ ଛଅ ସାତ ଖଣ୍ଡ ଟିକଟ୍ କାଟିବାକୁ ପଡେ । ସିଏ ବା କଅଣ ଏମିତି କାମ ? କିନ୍ତୁ ଷ୍ଟେସନ୍ ଘରଟାରେ ବସି ରହିବାକୁ ପଡେ । ଆଗରୁ ଲେଖିଚି, ପୁଣି ତା'ର ପୁନରାବୃତ୍ତି କରୁଛି ଯେ ମୁଁ ବିବାହ କଲି ନାହିଁ । କାହିଁକି ଆଉ ସେ ଜଞ୍ଜାଳ ଭିତରକୁ ଯାଇଥା'ନ୍ତି ? ତେଣୁ ଷ୍ଟେସନ୍ ଘରର ଚାରିଟା କାନ୍ଥ, ଛାତ କଣରେ ଜମିଯାଇଥିବା କିଛି କିଛି ଅନ୍ଧାର, ଟିକିଏ ରାତି ଡେରି ହୋଇଗଲେ ଏଠିକି ସେଠିକି ଚଙ୍ଗ୍ ଚଙ୍ଗ୍ ହୋଇ ଯିବା ଆସିବା କରୁଥିବା ଗୋଟାଏ ଦି'ଟା ଚୁଟିଆ ମୂଷା, ଦି ପହରେ କୁଟା କାଠି ଧରି ଫୁର୍‌ର୍ ଫାର୍‌ର୍ ହୋଇ ଉଡ଼ିବୁଲୁଥିବା ଗୋଟାଏ ଦିଟା ଚଟିଆ ପକ୍ଷୀ, ଗୋଟାଏ ଦୁଇଟା ଗୁଣ୍ଡୁଚି ମୂଷା ଏବଂ କଙ୍କଡା ବିଛାର ନାହୁଡ ପରି ଉଦ୍ୟତ ହୋଇ ରହିଥିବା ଅତୀତର ସ୍ମୃତି, ଏଇ ତ ମୋର ସମ୍ବଳ ।

ଗାଆଁରେ କିଏ ବା ଅଛି ? ଉଚ୍ଚ ପ୍ରାଥମିକ ସ୍କୁଲର ହେଡ୍‌ପଣ୍ଡିତେ, ଗାଆଁ ପୋଷ୍ଟ ମାଷ୍ଟର — ବାସ୍ । କେତେବେଳେ କେମିତି ଖଣ୍ଡେ ଅଧେ ବହି ପାଇଲେ ଓଲଟାଏ । ଏବେ ଦିନେ ଜଣେ କିଏ ବଡବାବୁ ଷ୍ଟେସନ୍ ଘର ଭିତରକୁ ଆସି ତାଙ୍କ ପରିବାରର ଖାଦ୍ୟର ବନ୍ଦୋବସ୍ତ କରିବାକୁ ଆଗ ଜଙ୍କସନ୍‌କୁ ଟେଲିଫୋନ୍ କରିବାକୁ ଅନୁରୋଧ କରିଥିଲେ । ଯାହାହେଉ ତା ମୋ' ପାଇଁ ଏକ ଆଶୀର୍ବାଦ ଥିଲା । କାରଣ

ସିଏ ଭୁଲକ୍ରମେ ମୋର ଟେବୁଲ ଉପରେ ଜର୍ମାନ ନାଟ୍ୟକାର ଫ୍ରେଡ୍‌ରିକ୍ ଡୁରମାର୍ଟଙ୍କର ଇଂରେଜୀ ତର୍ଜମା କରାଯାଇଥିବା ଖଣ୍ଡେ ନାଟକ ବହି 'ଦି ଭିଜିଟ୍' ଛାଡ଼ି ଯାଇଥିଲେ । ଏକା ନିଃଶ୍ୱାସକେ ପଢ଼ିଗଲି । ଏକେତ ଅନେକ ଦିନ ଧରି କିଛି ପଢ଼ିବାକୁ ପାଇନଥିଲି, ଆଉ ତା'ପରେ ନାଟକଟା ଏତେ ଚମତ୍କାର ଯେ ଶେଷ ନ କଲା ପର୍ଯ୍ୟନ୍ତ ବହିଟାକୁ ତଳେ ରଖି ହେବ ନାହିଁ । ମୋର ଇଚ୍ଛା ହେଉଥିଲା କୌଣସି ଧର୍ମଘଟ ଫଳରେ ଯଦି ପୂରା ଗୋଟାଏ ଦିନପାଇଁ ଟ୍ରେନ ଚଳାଚଳ ବନ୍ଦ ହୋଇଯାଆନ୍ତା ତାହାହେଲେ ଉତ୍ତମ ହୁଅନ୍ତା ।

ତମେ ହଏତ ସେ ବହି ପଢ଼ିଥିବ । ନ ପଢ଼ି ପାରିଥାଅ ମଧ୍ୟ । ଦକ୍ଷିଣ ଫ୍ରାନ୍‌ସର ପ୍ରାଚୁର୍ଯ୍ୟ ଭିତରେ ଥାଇ ହୁଏତ ପଢାପଢି ମୋଟେଇ କରୁ ନାଁ ଆଜିକାଲି । ତା' ପରେ ମୁଁ ସୁଜାତାକୁ ପଢ଼ିବାର ଦେଖିଥିଲି; କିନ୍ତୁ ମ୍ୟାଦାମ୍ ସେଁସାଁକୁ ପଢ଼ିବାର ଦେଖି ନାହିଁ କେବେ । ସେଥିପାଇଁ ଗଳ୍ପଟା କହିବାର ଲୋଭ ସମ୍ବରଣ କରିପାରୁନାହିଁ । ଏ ସବୁ ଗୋଟାଏ ଛଳନା । ଏ ଚିଠି ତମେ ପାଇବ ଓ ପଢ଼ିବ, ଏ ବିଶ୍ୱାସ ମୋର ଆଦୌ ନାହିଁ । କିନ୍ତୁ ଗୋଟାଏ ଲମ୍ବା ଚିଠି ଲେଖି କିଛି ସମୟ ତ ନଷ୍ଟ କରା ଯାଇପାରେ ।

ଏଇଥର ଗପଟା କହେଁ ।

ଏଇ ଆମ ମଧୁପୁର ପରି ସିଏ ବି ଥିଲା ହାମ୍‌ବର୍ଗ ସହର ତଳିର ଗୋଟିଏ ଛୋଟ ଗାଆଁ ଏବଂ ସେ ଗାଆଁର ଲୋକମାନେ ତଥାପି ଯାନ୍ତ୍ରିକ ପ୍ରଣାଳୀରେ କୃଷିକାର୍ଯ୍ୟ ସମ୍ପନ୍ନ କରିବା ଠିକ ଭାବରେ ରପ୍ତ କରି ନଥିଲେ । ସେ ଗାଆଁଟିର ନାଆଁ ଥିଲା ହାଭେନ୍ । ଆଉ ଆମ ଗାଆଁ କରଦେଇ ବହିଯାଉଥିବା ଚିତ୍ରୋତ୍ପଳା ନଈ ପରି ସେଠି ବି ଉଇଜ୍‌ର ନଦୀ ବହିଯାଉଥିଲା । ସେ ଗାଆଁର ଅଧିବାସୀ ବୋଇଲେ ଛୋଟ ପିଲାଙ୍କ ସ୍କୁଲ୍‌ର ମାଷ୍ଟର, ଷ୍ଟେସନ ମାଷ୍ଟର, ପୋଷ୍ଟ ମାଷ୍ଟର ଆଉ ଜଣେ ମଫସଲି ଥାନାର ସବ୍‌ଇନ୍‌ସପେକ୍ଟରକୁ ବୁଝାଏ । ଦିନେ ହଠାତ୍ ସେଇ ହାଭେନ୍ ଗାଆଁରେ ଏକ ଚହଳ ପଡ଼ିଯାଇଥିଲା । ତା'ର ହେତୁ ହଉଚି ଏହି ଯେ ସେହି ଗାଆଁର ଗୋଟାଏ ଝିଅ ସୁସାନ୍, ଯିଏ କି କୋଡ଼ିଏ ବର୍ଷ ତଳେ ହଠାତ୍ ଗାଆଁ ଛାଡ଼ି ଅନ୍ତର୍ଦ୍ଧାନ ହୋଇ ଯାଇଥିଲା, ସେ ଆଜି ମ୍ୟାଦାମ୍ ଦାଖିନାସିଆନ୍ ନାମରେ ପରିଚିତା । କେବଳ ସେତିକି ନୁହେଁ । ମୋସିଓ ଦାଖିନାସିଆନଙ୍କ ମୃତ୍ୟୁପରେ ସେ ବିପୁଳ ଐଶ୍ୱର୍ଯ୍ୟର ଅଧିକାରିଣୀ ହୋଇ ବର୍ତ୍ତମାନ ପୃଥିବୀର ଛଅ ସାତ ଜଣ ଧନୀ ମହିଳାଙ୍କ ମଧ୍ୟରୁ ଅନ୍ୟତମ । କେବଳ ଏତିକି ଖବରରେ ବିଶେଷ କାହାର ଆଚମ୍ବିତ ହବାର ନ ଥିଲା । ଖବର ଆହୁରି କହେ ଯେ, ମ୍ୟାଦାମ୍ ଦାଖିନାସିଆନ୍ ତାଙ୍କର ଜନ୍ମ ଗାଆଁ ଦେଖିବାକୁ ମନ ବଳାଇଛନ୍ତି ଓ ସେଥିପାଇଁ ସେ ଆସନ୍ତା ରବିବାର ଦିନ ତାଙ୍କର ଷଷ୍ଠ ସ୍ୱାମୀ ବବିଙ୍କ ସାଙ୍ଗରେ ଏଇ ହାଭେନ୍ ଗାଆଁରେ ଆସି ପହଞ୍ଚୁଛନ୍ତି ।

ମନୋହରୀ ଦୋକାନୀ ୱାଲ୍‌ଟର୍‌, ଷ୍ଟେସନ ମାଷ୍ଟର ବର୍ଗମ୍ୟାନ, ଛୋଟ ଚର୍ଚ୍ଚର ଫାଦର୍‌ ନିକୋଲାସ୍‌ ଓ ସେଇ ଗ୍ରାମ୍ୟ ପୌରସଭାର ସଭାପତି ବ୍ରିଗେଟ୍‌ ସମସ୍ତେ ଏକତ୍ରିତ ହୋଇ ଏକ ସମ୍ବର୍ଦ୍ଧନାର ଆୟୋଜନ କରୁଛନ୍ତି । ଲୌକିକତା ଦୃଷ୍ଟିରୁ ଏପରି ଏକ ସମ୍ବର୍ଦ୍ଧନାର ଯାଥାର୍ଥ୍ୟ ଥିଲେ ମଧ୍ୟ ଅସଲ ଉଦ୍ଦେଶ୍ୟ ହେଲା, ଯଦି ଏଇ ଚିର ଅବହେଳିତ ଦାରିଦ୍ର୍ୟ ପ୍ରପୀଡ଼ିତ ହାଭେନ୍‌ ଗାଆଁଟି ପାଇଁ କିଛି ମୋଟା ଧରଣର ଟଙ୍କା ଯୋଗାଡ଼ କରାଯାଇପାରେ । ସମ୍ବର୍ଦ୍ଧନାର ପ୍ରସ୍ତୁତି ଚାଲିଛି, କିଏ ଫେଷ୍ଟୁନ୍‌ ଲେଖୁଚି ତ କିଏ ଫୁଲମାଳ ଯୋଗାଡ କରୁଛି । ପ୍ରାରମ୍ଭିକ ସଙ୍ଗୀତ ବୋଲା ତ ହବଇ । ପୌର ସଭାର ସଭାପତି ବ୍ରିଗେଟ୍‌ ଅତ୍ୟନ୍ତ ଅସୁବିଧାରେ ପଡ଼ିଛନ୍ତି; ସମ୍ବର୍ଦ୍ଧନା ସଭାରେ ସେ ଭାଷଣ ଦେଲାବେଳେ କଅଣ କହିବେ, ସେ କଥା ଯା'କୁ ତାକୁ ପଚାରି, ସୁସାନ୍‌ ଓରଫ୍‌ ମ୍ୟାଦାମ୍‌ ଦାଖ୍‌ନାସିଆନ୍‌ଙ୍କ ସମ୍ପର୍କରେ ଏଠୁ ସେଠୁ ତଥ୍ୟ ଯୋଗାଡ କରୁଛନ୍ତି । କଥାରେ କଥାରେ ପଦାକୁ ବାହାରିଲାଣି ଯେ ଏଇ ସୁସାନ୍‌ ଝିଅଟି ହଠାତ୍‌ ହାଭେନ୍‌ ଗାଆଁରୁ ଅନ୍ତର୍ଦ୍ଧାନ ହୋଇଯିବା ପୂର୍ବରୁ ତାଙ୍କର ଏକମାତ୍ର ବାଲ୍ୟସାଥୀ ଥିଲେ ମନୋହରୀ ଦୋକାନଦାର ୱାଲ୍‌ଟର୍‌ । ସମସ୍ତେ ୱାଲ୍‌ଟର୍‌ଙ୍କୁ ଘେରି ବସିଛନ୍ତି । ଉଦ୍ଦେଶ୍ୟ ତାଙ୍କର କଅଣ ଗୁଣାବଳୀ ବର୍ଣ୍ଣନା କରାଯିବ ଏବଂ କିପରି ଭାବରେ ତାଙ୍କଠାରୁ ତାଙ୍କର ଏଇ ପ୍ରିୟ ଗାଆଁ ପାଇଁ ଗୋଟାଏ ମୋଟା ଅଙ୍କର ଚେକ୍‌ ଆଦାୟ କରାଯିବ । ବିଚରା ୱାଲ୍‌ଟର୍‌ ବେଶ ଅପ୍ରତିଭ ହୋଇ ପଡ଼ିଛି । ସେ ସୁସାନ୍‌ ସହିତ ତା'ର ବନ୍ଧୁତାକୁ ଅସ୍ୱୀକାର କରିପାରୁ ନାହିଁ । ଅଥଚ ଅନ୍ୟଦିଗରେ ଯେ ସୁସାନ୍‌ ଓରଫ ମ୍ୟାଦାମ୍‌ ଦାଖ୍‌ନାସିଆନ୍‌ ତାକୁ ଆଜି ଚିହ୍ନି ପାରିବେ ଓ ଅତୀତର ବନ୍ଧୁତ୍ୱକୁ ସ୍ମରଣ କରି ତାଙ୍କର ସୁପାରିଶ୍‌ରେ ଏଇ ହାଭେନ୍‌ ଗାଆଁ ପାଇଁ ଗୋଟାଏ ବଡ଼ ଧରଣର ଦାନ ଦେଇଯିବେ, ଏ ବିଷୟରେ ସେ ସନ୍ଦିହାନ ।

ଠିକ୍‌ ଏଇ ମଧୁପୁର ପରି ହାଭେନ୍‌ ସହରରେ ମଧ ମେଲ୍‌ ବା ଏକ୍‌ସପ୍ରେସ୍‌ ଗାଡ଼ି ଅଟକେ ନାଁ । କିନ୍ତୁ ସେଦିନ ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଦେଇ କଣ୍ଟିନେଣ୍ଟାଲ୍‌ ଗ୍ରାଣ୍ଡ କର୍ଡ଼ ସେଇ ଷ୍ଟେସନରେ ରହିଗଲା ଓ ତା' ଭିତରୁ ଅପ୍ରତ୍ୟାଶିତ ଭାବରେ ବାହାରି ଆସିଲେ ମ୍ୟାଦାମ୍‌ ଦାଖ୍‌ନାସିଆନ୍‌, ତାଙ୍କର ତରୁଣସ୍ୱାମୀ ବବି, ତାଙ୍କର ବବୁର୍ଚ୍ଚି ବେହେରା, କେତେ କିଏ । ତାଙ୍କ ସହିତ ମଧ ଆସିଥିଲେ ତାଙ୍କର ଇନ୍‌ଭାଲିଡ଼୍‌ ଚେୟାର୍‌ ବାହକ ଦୁଇଜଣ ଲୋକ ଲବି ଆଉ ଟବି । କହିବା ବାହୁଲ୍ୟ କୌଣସି ଏକ ପ୍ଲେନ୍‌ ଦୁର୍ଘଟଣାରେ ମ୍ୟାଦାମ୍‌ ଦାଖ୍‌ନାସିଆନ୍‌ଙ୍କୁ ତାଙ୍କର ଡ଼ାହାଣ ଗୋଡ଼ଟିକୁ ଉରୁଠାରୁ ହିଁ ହରେଇବାକୁ ପଡେ ଓ ତେଣୁ ସେ ଗୋଟିଏ ବିକଳ୍ପ ପାଦ (artificial leg) ବ୍ୟବହାର କରି ଅଳ୍ପ କିଛି ବାଟ ବୁଲାଚଲା କରିପାରନ୍ତି । କିନ୍ତୁ ତାଙ୍କୁ ଟିକିଏ ଦୂରବାଟ ଯିବାକୁ ପଡ଼ିଲେ ସେ ଇନ୍‌ଭାଲିଡ଼୍‌ ଚେୟାରଟି ବ୍ୟବହାର କରନ୍ତି ଓ ଏଇ ଲବି ଆଉ ଟବି ତାଙ୍କର ବାହକ ।

ମ୍ୟାଦାମ୍ ଦାଖ୍‌ନାସିଆନ୍‌ଙ୍କର ଏଇ ଆକସ୍ମିକ୍ ଆବିର୍ଭାବ ହାଭେନ୍ ଗାଆଁର ଅଭ୍ୟର୍ଥନା ସମିତିର ସଭ୍ୟମାନଙ୍କର ସମସ୍ତ ସୁନିର୍ଦ୍ଧାରିତ ଯୋଜନାକୁ ସଂପୂର୍ଣ୍ଣ ଗଣ୍ଡଗୋଳ କରିଦେଲା । ଯାହାହେଉ, ସମସ୍ତ ବିଶୃଙ୍ଖଳା ସତ୍ତ୍ୱେ କୌଣସି ପ୍ରକାରେ ପ୍ରାରମ୍ଭିକ ସ୍ୱାଗତ ପର୍ବ ସମାପ୍ତ ହେଲା ଓ ମ୍ୟାଦାମ୍ ଦାଖ୍‌ନାସିଆନ୍ ତାଙ୍କର ସ୍ୱାମୀ ବବିଙ୍କୁ ସମସ୍ତଙ୍କ ସହିତ ପରିଚୟ କରାଇ ଦେଲେ । ତାଙ୍କର ପୋଷାକ, ତାଙ୍କ ସାଙ୍ଗରେ ଆସିଥିବା ଅନୁଚରବୃନ୍ଦ ଓ ଅକଳନ୍ତି ଜିନିଷର ସମ୍ଭାର ହାଭେନ୍‌ର ସମସ୍ତ ଅଭ୍ୟର୍ଥକମାନଙ୍କୁ ବିସ୍ମିତ କରିଦେଇଥିଲା । କିନ୍ତୁ ବିସ୍ମୟ ପରେ ଆହୁରି ବିସ୍ମୟ ଅବଶିଷ୍ଟ ଥିଲା । କଣ୍ଟିନେଣ୍ଟାଲ୍ ଗ୍ରାଣ୍ଡ କର୍ଡ଼୍‌କୁ ଚେନ୍ ଟାଣି ଅଟକେଇଥିବା ହେତୁ ତାଙ୍କ ଉପରେ ହୋଇଥିବା ଜୋରିମାନା ଏକହଜାର ଡଲାର ଦେଇ ସାରିବା ପରେ ମୃତ ଟ୍ରେନ୍ କର୍ମଚାରୀମାନଙ୍କର ବିଧବା ସଂଘ ପାଇଁ ଆହୁରି ତିନିହଜାର ଡଲାର ମଧ ସର୍ବ ସମକ୍ଷରେ ଦାନ କରିଥିଲେ । ଏଇ ଲବି ଟବି ହେଉଛନ୍ତି କାନ୍‌ସାସ୍ ସହରର ଦୁଇଜଣ ପ୍ରସିଦ୍ଧ ଗନ୍‌ମ୍ୟାନ୍ । ସେମାନଙ୍କ ବିରୁଦ୍ଧରେ ଖାଲି ହତ୍ୟା ଓ ହତ୍ୟାର ପର୍‌ଓ୍ୟାନା । ମ୍ୟାଦାମ୍ ଦାଖ୍‌ନାସିଆନ୍ ଅନ୍ୟୁନ ଦଶହଜାର ଡଲାର ବ୍ୟୟକରି ଏଇ ଦୁଇ ଜଣଙ୍କୁ କୋର୍ଟର ପର୍‌ଓ୍ୟାନାରୁ ଖସେଇ ଆଣି ସେମାନଙ୍କୁ ଏକାଧାରରେ ଶିବିକା ବାହକ ଓ ଦେହରକ୍ଷୀ ଭାବରେ ନିଯୁକ୍ତି ଦେଇଛନ୍ତି ।

ଏଇ ପରିଣତ ବୟସରେ ମଧ ମ୍ୟାଦାମ୍ ଦାଖ୍‌ନାସିଆନ୍ ଦେଖିବାକୁ ଖୁବ୍ ସୁନ୍ଦରୀ । ତାଙ୍କର ଭେଲ୍‌ଭେଟ୍‌ର ଗାଉନ୍ ଏବଂ ସୁନାର ହ୍ୟାଣ୍ଡବାଗ୍ ବେଶ୍ ମାନୁଥାଏ । ଗାଆଁରେ ଓହ୍ଲେଇ ସେ ବେଶ୍ ପ୍ରଫୁଲ୍ଲ ମନେ ହଉଥାଆନ୍ତି । ଗାଆଁର ରାସ୍ତା, ତୋଟା, ପୋଖରୀ, ଭାଙ୍ଗି ଆସୁଥିବା ସ୍କୁଲ ସବୁ ନିରିଖେଇ ନିରିଖେଇ ମନେ ପକାଉଥାନ୍ତି । ଇତିମଧରେ, ସମବେତ ଜନତା ଭିତରୁ ଓ୍ୟାଲ୍‌ଟର୍ ଟିକିଏ ଆଗେଇ ଯାଇ ବାଆଁ ହାତରେ ମୁଣ୍ଡର ପଛବାଳ କୁଣ୍ଡଉ କୁଣ୍ଡଉ ମ୍ୟାଦାମ୍ ଦାଖ୍‌ନାସିଆନ୍‌ଙ୍କର ଅତି ନିକଟରେ ଠିଆ ହୋଇଛି । ଥରେ ଦାଖ୍‌ନାସିଆନ୍ ତାଙ୍କର ଦୁଇଟି ସୁନ୍ଦର ଭ୍ରୂକୁ ଉତ୍ତୋଳନ କରି ଓ୍ୟାଲ୍‌ଟର୍‌କୁ ଅନେଇଲେ ଓ ଖୁସିର ଆତିଶଯ୍ୟରେ କହିଲେ, 'ଆରେ ଓ୍ୟାଲ୍‌ଟର୍ । କାହିଁ କେତେଦିନୁ ତମ ସାଙ୍ଗେ ଦେଖା ହେଇ ନାହିଁ, ସବୁବେଳେ ତମକଥା ମନେପଡ଼େ; ମନେ ଅଛି ନାଁ ସେଇ ଏକାକିନୀ ବିଧବାର ଘର, ଯେଉଁଠି ଆମେ ଅନେକ ଖୁସିର ମୁହୂର୍ତ୍ତ କଟେଇଛେ ?' ଓ୍ୟାଲ୍‌ଟର୍ ଖାଲି ହଁ ହଁ କହି ମୁଣ୍ଡ ଟୁଙ୍ଗାରି ଦାଖ୍‌ନାସିଆନ୍‌ଙ୍କର କଥାର ଜବାବ ଦବାଛଡ଼ା ଆଉକିଛି ଉପାୟ ନ ଥିଲା ।

ଏଇ ପ୍ରାଚୀନ ବନ୍ଧୁତ୍ୱ ସ୍ମରଣ କରି ଦାଖ୍‌ନାସିଆନ୍‌ଙ୍କର ବନ୍ଧୁ ସମ୍ଭାଷଣ ଉପସ୍ଥିତ ପ୍ରତ୍ୟେକ ବ୍ୟକ୍ତି ମନରେ ଆଶାର ଉଦ୍ରେକ କରିଥିଲା, ଏଥିରେ ସନ୍ଦେହ ନାହିଁ । ତା'ପରେ ସମସ୍ତଙ୍କୁ ଆହୁରି ଆଶ୍ଚର୍ଯ୍ୟ କରି ଦାଖ୍‌ନାସିଆନ୍ କେବଳ ମାତ୍ର ଓ୍ୟାଲ୍‌ଟର୍ ସହିତ ଏକାନ୍ତରେ କିଛି ସମୟ ନିକଟବର୍ତ୍ତୀ ଜଙ୍ଗଲ ଭିତରେ ଆଳାପ କରିଥିଲେ ।

ସେଇ ଆଳାପ ପ୍ରସଙ୍ଗରେ ଭାବପ୍ରବଣ ଓ୍ୱାଲ୍‌ଟର୍ ଦାଖ୍‌ନାସିଆନ୍‌ଙ୍କର ହାତ ଧରି ପକାଇ କହିଥିଲା, 'ସୁସାନ୍ ତମେ ସେଦିନ ବି ଯେମିତି ସୁନ୍ଦର ଥିଲ, ଆଜି ଠିକ ସେହିପରି ଅଛ । ତମର ହାତ ଠିକ୍ ଆଗପରି ଶୁଭ୍ର କୋମଳ ଓ ଶୀତଳ ।' ଓ୍ୱାଲ୍‌ଟର୍‌ର ଯୁକ୍ତହସ୍ତ ଭିତରୁ ନିଜର ହାତ ମୁକ୍ତ କରି ଆଣି ଦାଖ୍‌ନାସିଆନ୍ କହିଥିଲେ, 'ଓ୍ୱାଲ୍‌ଟର୍, ସମୟ ନଈପରି ବହିଯାଏ, ମୁଁ ମୋଟା ହୋଇ ଗଲିଣି, ମୁଁ ନକଲି ପାଦ ଲଗେଇଚି, ମୋର ପେଟ ବାହାରିଗଲାଣି, ଆଉ ଏଇ କିଛି ସମୟ ଆଗରୁ ଯେଉଁ ହାତଧରି ଭାବପ୍ରବଣ ହୋଇ ପଡିଥିଲ ସେ ହାତଟା ବି ମୋର ନକଲ ହାତ, ମୋର ପ୍ରାୟ ସବୁକିଛି ନକଲି । କିନ୍ତୁ ମୁଁ ସ୍ୱୀକାର କରୁଛି, ମୁଁ ଆଜି ବେଶ୍ ବିତ୍ତଶାଳୀ ଏବଂ ମୋର ଏଇ ଗାଆଁ ପାଇଁ ଦୁଇ କୋଟି ଡ଼ଲାର ଦେଇ ଯିବାକୁ ମୋର ଆଦୌ ଆପତ୍ତି ନାହିଁ ।'

ହାଭେନ୍ ଗାଆଁରେ ହୁଲ୍‌ସ୍ଥୁଲ୍ ପଡ଼ିଯାଇଛି । ଓ୍ୱାଲ୍‌ଟର୍ ଜରିଆରେ ଦୁଇକୋଟି ଡଲାର୍‌ର ପତିଶ୍ରୁତି ମିଳିଛି । ଜୟ ଓ୍ୱାଲ୍‌ଟର୍‌ର ଜୟ ! ଓ୍ୱାଲ୍‌ଟର୍ ନଥିଲେ କି ଏକଥା ସମ୍ଭବ ହୁଅନ୍ତା ? ଆଉ ତା'ଛଡ଼ା ଓ୍ୱାଲ୍‌ଟର୍ ଲୋକଟା ବି ଭଲ । ଆସନ୍ତା ନିର୍ବାଚନରେ ଓ୍ୱାଲ୍‌ଟର୍ ପୌରସଭାର ସଭାପତି ହେବାପାଇଁ ଯୋଗ୍ୟ ବ୍ୟକ୍ତି । ଗାଆଁର ଆବାଳ-ବୃଦ୍ଧ-ବନିତା ସଭାର ଆୟୋଜନରେ ବ୍ୟସ୍ତ ଯେଉଁଠି ମ୍ୟାଦାମ୍ ଦାଖ୍‌ନାସିଆନ୍ ତାଙ୍କର ମହତ ଦାନର କଥା ଆନୁଷ୍ଠାନିକ ଭାବରେ ଘୋଷଣା କରିବେ ।

ସଭାମଞ୍ଚରେ ହାଭେନ୍ ଗାଆଁର କୁକୁର ବିଲେଇ ଛୁଆ ପର୍ଯ୍ୟନ୍ତ ଉପସ୍ଥିତ । ମ୍ୟାଦାମ୍ ଦାଖ୍‌ନାସିଆନ୍‌ଙ୍କ ପାଇଁ ଏକ ସ୍ୱତନ୍ତ୍ର ଚଉକି ବନ୍ଦୋବସ୍ତ କରାଯାଇଛି ଓ ତାଙ୍କର ଦେହ ଘଷି ଅନ୍ୟ ଯେଉଁ ଚଉକିଟି ରଖାଯାଇଛି, ତାହା ଓ୍ୱାଲ୍‌ଟର୍ ପାଇଁ ଉଦ୍ଦିଷ୍ଟ । ପୌର ସଭାପତି ମ୍ୟାଦାମ୍ ଦାଖ୍‌ନାସିଆନ୍‌ଙ୍କର ଏଇ ପ୍ରଭୂତ ବିତ୍ତର ଅଧିକାରିଣୀ ହିସାବରେ ତାଙ୍କୁ ସ୍ୱାଗତ କରି ତାଙ୍କର ଗୁଣାବଳୀ ବର୍ଣ୍ଣନା କଲେ ।

'ପ୍ରକୃତି ବିଜ୍ଞାନରେ ତାଙ୍କର ଅସାଧାରଣ ମେଧାର ପରିଚୟ ସେ ପିଲାଦିନୁହିଁ ଦେଇଥିଲେ । ସେତେବେଳେ ସେ ଥିଲେ କେବଳ ସୁସାନ । ସେ ଥିଲେ କଠିନ ପରିଶ୍ରମୀ, ନ୍ୟାୟନିଷ୍ଠ । ଜଣେ ବିଧବାର କଷ୍ଟ ସହି ନ ପାରି ସେ ଓ ଓ୍ୱାଲ୍‌ଟର୍ ଦୁଇ ବାଲ୍ୟବନ୍ଧୁ ଆଳୁ ଚୋରିକରି ସେଇ ବିଧବାକୁ ଅନାହାରରୁ ରକ୍ଷା କରିଥିଲେ, ଏହି ତାଙ୍କ ଉଦାର ହୃଦୟର ପରିଚୟ ଦିଏ । ପୃଥିବୀର ଅନ୍ୟତମ ବିଭବଶାଳୀ ନାରୀ ହୋଇ ମଧ ସେ ତାଙ୍କର ଏଇ ନଗଣ୍ୟ, କ୍ଷୁଦ୍ର, ଦରିଦ୍ର ଓ ଅବହେଳିତ ଗାଆଁକୁ ସ୍ମରଣ ରଖିଛନ୍ତି, ତାହା ତାଙ୍କର ମାନବିକତା ଗୁଣର ପରିଚୟ ଦିଏ', ଇତ୍ୟାଦି ଇତ୍ୟାଦି । ପ୍ରଚୁର କରତାଳି ଦ୍ୱାରା ସଭାପତିଙ୍କ ଅଭିଭାଷଣକୁ ଜନତା ସମର୍ଥନ ଜଣାଇଲା ।

ପ୍ରତ୍ୟୁତ୍ତର ଦେବାକୁ ମ୍ୟାଦାମ୍ ଦାଖ୍‌ନାସିଆନ୍ ଉଠି ଠିଆ ହେଲେ । ଉତ୍‌କଣ୍ଠାର ଆତିଶଯ୍ୟରେ ସମଗ୍ର ଜନତା ଯେପରି ଫାଟି ପଡ଼ିବ । ଦାଖ୍‌ନାସିଆନ୍‌ଙ୍କର

ଭାଷଣ ଅତ୍ୟନ୍ତ ସଂକ୍ଷିପ୍ତ ଥିଲା । ସେ ପ୍ରଥମ ବାକ୍ୟରେ ହିଁ କହିଲେ ମୁଁ ମୋର ଜନ୍ମ ହୋଇଥବା ଗାଆଁର ପୌରସଭା ପାଇଁ ଦୁଇ କୋଟି ଡ଼ଲାର, ଓ ଏଇ ଗାଆଁର ଲୋକମାନଙ୍କ ଭିତରେ ବଣ୍ଟନ କରିବା ପାଇଁ ଆଉ ଦୁଇକୋଟି ଡଲାର, ଏହିପରି ଚାରି କୋଟି ଡଲାର ଦେଇ ଯିବାକୁ ସ୍ଥିର ନିଷ୍ପତ୍ତି କରିଛି ।

ଜନତା ଭିତରେ ବିବିଧ ପ୍ରତିକ୍ରିୟା ପ୍ରକାଶ ପାଇଲା । ଷ୍ଟେସନମାଷ୍ଟର ଚଷମା କାଢ଼ି ପୋଛୁ ପୋଛୁ ସ୍ଥିର ହୋଇଗଲେ । ସ୍କୁଲର ହେଡ୍ ପଣ୍ଡିତଙ୍କର ଆଖି ତରାଟି ହୋଇଗଲା, ପଲକ ପଡ଼ିଲା ନାହିଁ । ପୌରସଭାର ସଭାପତି ହାତରେ ଖଇନି ଧରି ପାଟିକୁ ପକଉ ପକଉ ସେଇଠି ବନ୍ଦ, ପାଟିଟା ବିକୃତ ଭାବରେ ଆଁହେଇ ରହିଛି । ଓ୍ୱାଇଟର ଟା'ର ଶୁଖିଲା ଓଠ ଦୁଇଟାକୁ ଜିଭ ଦେଇ ବାରମ୍ବାର ଓଦା କରି ନେଉଛି । ସମବେତ ଜନତା କିଂକର୍ତ୍ତବ୍ୟବିମୂଢ଼ ଓ ହତବାକ୍ ।

ମ୍ୟାଦାମ୍ ଦାଖିନାସିଆନ୍‌ଙ୍କର ଦ୍ୱିତୀୟ ଉଚ୍ଚାରଣ ହେଲା, 'ମୁଁ ଦେବି କିନ୍ତୁ ଗୋଟିଏ ସର୍ତ୍ତରେ । ମୁଁ ନ୍ୟାୟ ବିଚାର ଚାହେଁ । ' ନ୍ୟାୟ ବିଚାର ? କେହି କିଛି ବୁଝିବା ଅବସ୍ଥାରେ ନଥିଲେ । ଏଇ ଦରିଦ୍ର ହାଭେନ ଅଧିବାସୀଙ୍କଠାରୁ ମ୍ୟାଦାମ୍ ଦାଖନାସିଆନ୍ କି ନ୍ୟାୟ ବିଚାର ଆଶା କରନ୍ତି ?

ସମସ୍ତ ଉତ୍କଣ୍ଠାର ସମାପ୍ତି କରି ଦାଖିନାସିଆନ୍‌ଙ୍କର ଇଙ୍ଗିତର କଥାଟାକୁ ବୁଝେଇବାକୁ ଆସିଲେ ତାଙ୍କର ଖାନ୍‌ସାମା । ଖାନ୍‌ସାମା ପ୍ରଥମରୁହିଁ ଆସି ପରିଚୟ ଦେଲେ ଯେ, ସେ କୋଡ଼ିଏ ବର୍ଷ ତଳେ ଏଇ ହାଭେନ୍ ଗାଆଁର ସବ୍‌ଜଜ୍ ହିସାବରେ ବିଚାରାଳୟର ଦାୟିତ୍ୱରେ ଥିଲେ । ସେଇ ସମୟରେ ମ୍ୟାଦାମ୍ ଦାଖିନାସିଆନ୍ ଓରଫ ସୁଶାନ୍ ତାଙ୍କ କୋର୍ଟରେ ଏକ ଆବେଦନ କରି କହନ୍ତି ଯେ ସେ ଓ୍ୱାଲ୍‌ଟରଙ୍କର ପ୍ରଣୟିନୀ ଓ ଓ୍ୱାଲ୍‌ଟର୍‌ଙ୍କ ଜରିଆରେ ସେ ତାଙ୍କ ଗର୍ଭରେ ଏକ ଅବୈଧ ସନ୍ତାନ ଧାରଣ କରିଛନ୍ତି । ଓ୍ୱାଇଟର୍ ଅନ୍ୟ ଜଣେ ବଣିକର କନ୍ୟାକୁ ବିବାହ କରିବାକୁ ଯାଉଛନ୍ତି ଓ ଏଇ ଅବୈଧ ସନ୍ତାନ କଥା ସମ୍ପୂର୍ଣ୍ଣ ଅସ୍ୱୀକାର କରୁଛନ୍ତି । ତାଙ୍କର ପ୍ରାର୍ଥନା ଥିଲା ଓ୍ୱାଲ୍‌ଟରଙ୍କର ଅନ୍ୟତ୍ର ବିବାହ ରଦ୍ଦ କରାଯାଉ ଓ ତାଙ୍କ ପାଇଁ ଓ ତାଙ୍କ ଜଠରସ୍ଥିତ ସନ୍ତାନ ପାଇଁ ଓ୍ୱାଲ୍‌ଟରଙ୍କୁ ପ୍ରଭୂତ ପରିମାଣ କ୍ଷତିପୂରଣ ଅର୍ଥ ଦବାକୁ ପଡୁ । କିନ୍ତୁ ଏଇ ସହରର ଦୁଇ ଜଣ ନାଗରିକ ସାକ୍ଷ୍ୟ ଦେଇଥିଲେ ଯେ ସେମାନେ ସୁଶାନ୍‌ଙ୍କ ସହିତ ରାତ୍ରିଯାପନ କରିଛନ୍ତି, ତେଣୁ ନିଶ୍ଚିତ ପ୍ରମାଣର ଅଭାବରୁ ସେଦିନ ମୋର ଇଜ୍‌ଲାସ୍‌ରେ ସୁଶାନ୍ ତାଙ୍କର ଭରଣପୋଷଣ ମକଦ୍ଦମା ହାରିଯାଇଥିଲେ । ଖାନ୍‌ସାମା ତାଙ୍କର ଉକ୍ତି ସମାପ୍ତ କରି କହିଲେ, 'ସେଇ ହେତୁ ମୁଁ ଆଜି ମ୍ୟାଦାମ୍ ଦାଖିନାସିଆନ୍‌ଙ୍କର ଖାନସାମା । ଆପଣମାନେ ହୁଏତ ଆଶ୍ଚର୍ଯ୍ୟ ହେଉଥିବେ, କିନ୍ତୁ ଯଦି ଜାଣନ୍ତେ ମୁଁ କେତେ ଦରମା ପାଏ, ତାହାହେଲେ ବୋଧହୁଏ ଆଶ୍ଚର୍ଯ୍ୟ ହୁଅନ୍ତେ

ନାହିଁ ।' ଖାନ୍‌ସାମା ବସି ସାରିଲାପରେ ମ୍ୟାଦାମ୍ ଦାଖ୍‌ନାସିଆନ୍ ତାଙ୍କର ନ୍ୟାୟବିଚାର ସର୍ତ୍ତଟିର ଏକ ସରଳ ତର୍ଜମା କଲେ । ସର୍ତ୍ତଟି ହଉଚି ଯେ ଏଇ ଚାରି କୋଟି ଡଲାର୍‌ର ବିନିମୟରେ ସେ ଓ୍ୱାଲ୍‌ଟର୍‌ର ମୃତ ଦେହ ଚାହାଁନ୍ତି ।

ଜନତା ତଥାପି ସ୍ତବ୍ଧ । ଓ୍ୱାଲ୍‌ଟର୍‌ର ବିବାହିତା ସ୍ତ୍ରୀଙ୍କର କଇଁ କଇଁ କାନ୍ଦଣାରେ ସଭାସ୍ଥଳ ମୁଖରିତ । ବେଶ୍ କିଛି ସମୟ ପରେ ପୌରସଭାର ସଭାପତି ସାମାନ୍ୟ ଗଳା ପରିଷ୍କାର କରି ଜଣେଇ ଦେଲେ ଯେ, ଗୋଟାଏ ସଭ୍ୟ ଦେଶରେ ଜଣେ ଲୋକର ଜୀବନ ବିନିମୟରେ ଚାରି କୋଟି ଡଲାରର ଦାନ ଗ୍ରହଣଯୋଗ୍ୟ ନୁହେଁ, ତେଣୁ ତାଙ୍କର ଇଚ୍ଛା ବିରୁଦ୍ଧରେ ହେଲେ ମଧ୍ୟ ସେ ପୁରବାସୀଙ୍କ ତରଫରୁ ଏ ଦାନ ଦୁଃଖର ସହିତ ପ୍ରତ୍ୟାଖାନ କରୁଛନ୍ତି ।

ମ୍ୟାଦାମ୍ ଦାଖ୍‌ନାସିଆନ୍ ନିର୍ଲିପ୍ତ ଭାବରେ ଠିଆ ହେଇ ରହିଲେ । ଦାମୀ ସିଗାରେଟ କେଶ୍‌ରୁ ଖଣ୍ଡେ ସିଗାରେଟ୍ କାଢ଼ି ଲମ୍ବା ପାଇପ୍‌ରେ ସଂଯୋଗ କଲେ । ଜନତା ଏତେ ନିଶ୍ଚଳ ଥିଲା ଯେ ସାମାନ୍ୟ ଦିଆସିଲି କାଠି ମାରିବାର ଶବ୍ଦ ମଧ୍ୟ କର୍କଶ ମନେ ହେଲା । ସିଗାରେଟ୍‌ରେ ଅଗ୍ନି ସଂଯୋଗ ପରେ ମ୍ୟାଦାମ୍ ଦାଖ୍‌ନାସିଆନ୍‌ଙ୍କ ମୁହଁରୁ ନୀଳ ଧୂଆଁର କୁଣ୍ଡଳୀ ଆସ୍ତେ ଆସ୍ତେ ଉପରକୁ ଉଠିଲା ଏବଂ ସେ କହିଲେ, 'ମୁଁ ଆପଣମାନଙ୍କୁ ଆଉ ଥରେ ଭଲ ଭାବରେ ଚିନ୍ତା କରିବା ପାଇଁ ସମୟ ଦେଲି ।'

ସେଦିନର ସଭା ସେତିକିରେ ମଉଳିଗଲା । ମ୍ୟାଦାମ୍ ଦାଖ୍‌ନାସିଆନ୍ ଘୋଷଣା କଲେ ଯେ, ସେ ତାଙ୍କର ଷଷ୍ଠ ସ୍ୱାମୀ ବବୀଙ୍କୁ ଛାଡପତ୍ର ଦଉଛନ୍ତି ଏବଂ ତାଙ୍କର ସପ୍ତମ ସ୍ୱାମୀଙ୍କ ସହିତ ତାଙ୍କର ବାହାଘର ତାଙ୍କର ଏଇ ଜନ୍ମମାଟି ହାଭେନ୍ ଗାଆଁରେ ହିଁ ହେବ । ଏ ଘୋଷଣା ହାଭେନ୍ ଗାଁଆରେ ସୀମିତ ନଥିଲା । ଅବିଳମ୍ବେ ଆନ୍ତର୍ଜାତିକ ସମ୍ବାଦପତ୍ର ସଂସ୍ଥାମାନେ ଏହାକୁ ପ୍ରତ୍ୟେକ ସମ୍ବାଦପତ୍ରର ପୁରୋଭାଗରେ ପ୍ରକାଶ କଲେ ।

ହାଭେନ୍ ଗାଆଁର ଲୋକଙ୍କ ଭିତରେ ଏକ ଆଲୋଡ଼ନ ଚାଲିଲା । ମ୍ୟାଦାମ୍ ଦାଖ୍‌ନାସିଆନ୍‌ଙ୍କର ସପ୍ତମ ବିବାହ ଉତ୍ସବରେ କି ଟଙ୍କାର ସୁଅ ନ ଛୁଟିବ ଏଠି ! ଓ୍ୱାଲଟର୍ ତା'ର ଦୋକାନର ପରିଧି ଭିତରୁ ଆଉ ବାହାରକୁ ଆସିଲା ନାହିଁ । କିନ୍ତୁ ସେଠି ବି ତା'ର ମୁକ୍ତି କାହିଁ ? ସକାଳ ପାହିଲା ବେଳକୁ କି ପରିବର୍ତ୍ତନ ହେଇଗଲା ଏଇ ଗାଆଁଟାର ? ବର୍ଗମ୍ୟାନ, ଯାହାର ଶସ୍ତା ସିଗାରେଟ୍ ଟାଣିବାର ପଇସା ବି ନ ଥାଏ, ସେ କେମିତି ଦାମୀ ଦାମୀ ସିଗାରେଟ ପ୍ୟାକେଟ ପରେ ପ୍ୟାକେଟ କିଣିଚାଲିଛି ? ଫାଦର ନିକୋଲାସ ଯିଏ କି ପ୍ରତି ରବିବାରରେ ଗୀର୍ଜାରେ ଘଣ୍ଟା

ପିଚି ପିଚି ଲୋକଙ୍କୁ ଏକାଠି କରି କହନ୍ତି ଯେ, ଲୋକମାନେ ଚାନ୍ଦା ନଦେଲେ ଏ ଗୀର୍ଜାର ଛାତ ଖସିପଡ଼ିବ, ସେ ହଠାତ୍ ନୂଆ କନାର ଆଲ୍‌ଖାଲା ପିନ୍ଧି, ନୂଆ ଜୋତା ପିନ୍ଧି ତାଙ୍କର ପିଲାମାନଙ୍କ ପାଇଁ ଟଫି ଖରିଦ କରିବାକୁ ଆସିଛନ୍ତି । ଆଉ ସେଇ ପୁଲିସ୍ ସବ୍‌ଇନ୍ସପେକ୍ଟର, ଯିଏ କଖାରୁ ଚୋର, କୁକୁଡ଼ା ଚୋରଠାରୁ ବି' ପଇସା ଘୁସ୍ ନବାକୁ ଭୁଲେ ନାହିଁ, ସିଏ ବି ଆଜି ଥାନାରେ ଗୋଟାଏ ଦାମିକା ସିଗାରେଟ ଲଗେଇ ଟାଣି ଚାଲିଚି । ସ୍କୁଲର ଛୋଟ ପିଲାମାନଙ୍କର ବେଶ ପୋଷାକ ଧୀରେ ଧୀରେ ନୂଆ ପାଲଟି ଯାଉଛି । ଏ ସବୁ କଅଣ ଚାଲିଛି ? ହଠାତ୍ ହାଭେନ୍‌ର ଦରିଦ୍ର ଅଧିବାସୀମାନଙ୍କର ପକେଟ୍‌ରେ ଏତେ ପଇସା ଆସିଲା କୁଆଡୁ ?

ଓ୍ୱାଲଟର ଜଣଜଣକରି ସଭାପତି, ହେଡ୍‌ପଣ୍ଡିତ, ସବ୍‌ଇନ୍‌ସ୍‌ପେକ୍ଟର, ଫାଦର୍ ସମସ୍ତଙ୍କ ପାଖକୁ ଯାଉଛି । ସମସ୍ତଙ୍କୁ ନେହୁରା ହେଇ କହିଚି, 'ଭାଇ, ରକ୍ଷା କର । ମତେ କଅଣ ସତକୁ ସତ ମାରିଦବ ? ମୁଁ ଯାହାକୁ ପଚାରୁଚି, ସେ କହୁଚି ମୁଁ ଧାରରେ ଜିନିଷ କିଣୁଚି । ଧାର୍ ଏମାନଙ୍କୁ ଦଉଚି କିଏ ? ଏମାନେ ଧାର୍ ଶୁଝିବେ କେମିତି ? ଦିନକୁ ଦିନ ଏମାନଙ୍କର ଚାହିଦା ବଢି ଚାଲିଛି । ଏଇ ଗାଆଁର ହାତ ଗଣତି ହେଇ ଚାରିଟା କି ପାଞ୍ଚଟା ଟ୍ରାଞ୍ଜିଷ୍ଟର୍ ଥିଲା । ଆଜି ତ ପ୍ରତି ଘରେ ଘରେ ଟ୍ରାଞ୍ଜିଷ୍ଟର୍ !'

ସମସ୍ତେ କହିଛନ୍ତି, ତମେ ଭୟ କରନାହିଁ ଓ୍ୱାଲ୍‌ଟର୍ । ଜଣକର ଘୋଷଣା ଉପରେ ତାକୁ ଆଉ ଗିରଫ କରାଯାଏନା — ଏ ଦେଶର ଆଇନ୍ ଅନୁସାରେ ତମକୁ ହତ୍ୟା କରିବା ପାଇଁ ଯେ ଏକ ନିର୍ଦ୍ଦିଷ୍ଟ ଉଦ୍ୟମ କରାଯାଉଛି, ସେ କଥା ପ୍ରମାଣ ହବା ଉଚିତ୍ । କିନ୍ତୁ କାହିଁ ସେ ପ୍ରମାଣ ? କଥା କଥାକେ ତ ସମସ୍ତେ କହନ୍ତି ତତେ ଜୀବନରେ ମାରିଦେବି, କିନ୍ତୁ ତାହା କଅଣ ପ୍ରମାଣ ପାଇଁ ଯଥେଷ୍ଟ ?

ଓ୍ୱାଲ୍‌ଟର୍ ସତକୁ ସତ ହାଭେନ୍ ଛାଡ଼ି ଚାଲିଯିବାକୁ ବସିଥିଲା । କିନ୍ତୁ ସେଦିନ ଅଚାନକ ଭାବରେ ହାଭେନ୍‌ର ଅନେକ ଲୋକ ତାକୁ ଷ୍ଟେସନ୍‌ରେ ବିଦାୟ ସମ୍ବର୍ଦ୍ଧନା ଦବାକୁ ଆସିଥିଲେ । ଓ୍ୱାଲଟର୍ ଚିତ୍କାର କରି ଉଠିଲା, 'ତମେ ସବୁ କାହିଁକି ଆସିଚ ? କିଏ ତମକୁ ଡାକିଥିଲା ?' ସେମାନେ ସମସ୍ତେ କହିଥିଲେ ଆମେ ତମକୁ ବିଦାୟ ଦବାକୁ ଆସିଛୁ । କିନ୍ତୁ ଓ୍ୱାଲ୍‌ଟର୍ କହିଲା, 'ନା, ତମେ ବିଦାୟ ଦବାକୁ ଆସିନାହଁ । ଯା' ପଛରେ ଏକ ବିରାଟ ଷଡଯନ୍ତ୍ର ଅଛି । ମୁଁ ଜାଣେ ଟ୍ରେନ୍ ଆଡ଼କୁ ଆଉ ଗୋଟାଏ ପାଦ ଆଗେଇ ଗଲେ ତମେମାନେ ସମସ୍ତେ ମତେ ପଛକୁ ଭିଡ଼ି ଧରିବ ।' ସେ ପୁଣି ଚିତ୍କାର କରିଥିଲା, 'ଯାଅ, ସମସ୍ତେ ଚାଲିଯାଅ ମୁଁ କାହାକୁ ଚାହେଁନା ।'

କିନ୍ତୁ ସେତେବେଳକୁ ଡେରି ହେଇଯାଇଥିଲା । ସେଦିନର ପାସେଞ୍ଜର ଗାଡ଼ି କଳା ଧୂଆଁ ଛାଡ଼ି ଗଡ଼ିଯାଇଥିଲା ଅନେକ ବାଟ ।

ରାତ୍ରୀର ଅନ୍ଧକାର ଭିତରେ ୱାଲ୍‌ଟର ପାଖକୁ ଆସିଛନ୍ତି ଫାଦର ନିକୋଲାସ ଓ କହିଛନ୍ତି ଯେ ୱାଲ୍‌ଟର୍‌ର ଗାଁ ଛାଡ଼ି ଚାଲିଯିବା ଉଚିତ୍ । ସମସ୍ତ ଗାଆଁର ଚାହିଦା ବଢ଼ିଚାଲିଲାଣି । ସମସ୍ତେ ଉଧାର୍‌ରେ କାନ ପର୍ଯ୍ୟନ୍ତ ବୁଡ଼ିଗଲେଣି । ନୀଚିବାଗାଣ ସ୍କୁଲ ଶିକ୍ଷକ ଆଜ୍ଞଷ ମଦ୍ୟପାନ କରି ୱାଲ୍‌ଟର୍‌ର ଦ୍ୱାରସ୍ଥ ହେଇ କହିଛନ୍ତି, 'ୱାଲ୍‌ଟର୍, ମୁଁ ବି ଆଉ ପାରୁନାହିଁ । ତୁ ପଳା ତୁ ପଳା, ଆଉ କିଛିଦିନ ପରେ ଦେଖିବୁ ମୁଁ ବି ଏମାନଙ୍କ ସାଙ୍ଗରେ ଯୋଗଦେଇଛି ।'

ନିରୁପାୟ ହେଇ ୱାଲ୍‌ଟର୍ ତା' ଘର ଭିତରେ ପଦଚାରଣା କରୁଛି । ଗାଆଁକୁ ଗୋଟାଏ ସିନେମା ଆସିଛି ନାଁ କଅଣ ? ମାଇକ୍ ଯୋଗେ ବାରମ୍ବାର ଦର୍ଶକମାନଙ୍କୁ ଡକାଯାଉଛି । ଏ ଗାଆଁରେ ସିନେମା ? ଏଠି ତ କେବେ କିଏ ସାପ, ବାଘ ଓ ଧଳା ଭାଲୁର ମ୍ୟାନେଜରୀ ଧରି ବ୍ୟବସାୟ କରିବାକୁ ଆସିଲେ ସେ ବ୍ୟବସାୟ ତିନିଦିନରୁ ଚାରିଦିନ ତିଷ୍ଠେନାଁ । ଏଠି ସିନେମା ଦେଖୁଚି କିଏ ? ଠିକ୍ ଏଇ କଥା ୱାଲ୍‌ଟର ଭାବୁଥିଲା ବେଳେ ସେ ବ୍ୟାଲ୍‌କନି ଉପରୁ ଦେଖିଲା, ତାର ସ୍ତ୍ରୀ ଓ ପୁଅ ଖୁବ୍ ତରତରରେ ସିନେମା ଦେଖି ବାହାରିଛନ୍ତି । ତାର ସ୍ତ୍ରୀ ପିନ୍ଧିଛି ଗୋଟାଏ ନୂଆ ଗାଉନ୍, ତା'ର ପୁଅ ପିନ୍ଧିଛି ଗୋଟାଏ ନୂଆ ପ୍ୟାଣ୍ଟ ଆଉ ସାର୍ଟ ।

'ହାଏ ଡାର୍ଲିଙ୍ଗ୍ , ତମର ଏ ନୂଆ ଗାଉନ୍ କେବେ କିଣିଲ ?' ଖାଲି ଜବାବ୍ ଆସିଲା, 'ଗତକାଲି ଉଧାରରେ' । ୱାଲ୍‌ଟର ଆଉ କିଛି କହି ନାହିଁ । କାରଣ ସେ ସେତେବେଳକୁ ତା'ର ପୁଅର ମଣିବନ୍ଧରେ ଗୋଟାଏ ନୂଆ ଦାମୀ ରିଷ୍ଟୱାଚ୍ ଦେଖିସାରିଥିଲା ।

ଘରେ କେହି ନାହିଁ । ଏପଟକୁ ଚଉଦପାଦ, ସେପଟକୁ ଚଉଦପାଦ, ବୁଲୁଚି ୱାଲ୍‌ଟର । ଏପଟେ ଇଟାର କାନ୍ଥ, ସେପଟେ ଗୋଟାଏ ଇଟାର କାନ୍ଥ । କିଏ ବୋଧହୁଏ ଘରର ସାମ୍ନା ଦରଜାରେ କରାଘାତ କଲା । ଚମକି ପଡ଼ିଲା ୱାଲଟର । ଶେଷକୁ କଅଣ ସେମାନେ ଆସିଗଲେ ? କିନ୍ତୁ ବାଲ୍‌କନି ଉପରୁ ୱାଲ୍‌ଟର୍ ଦେଖିଲା ପୌର ସଭାର ସଭାପତି ନିଜେ ଉପସ୍ଥିତ । ହାତରେ ଗୋଟାଏ ଡବଲ୍ ବ୍ୟାରେଲ୍ ବନ୍ଧୁକ । ୱାଲ୍‌ଟର୍ ଓହ୍ଲେଇ ଆସି ସଭାପତିଙ୍କ ଆଗରେ ଠିଆହେଲା । ସଭାପତି ହତବାକ୍ ।

ୱାଲ୍‌ଟର୍ ପଚାରିଲା, 'କଅଣ ହେଲା ଚେଆରମ୍ୟାନ, ଏତେ ରାତିରେ, ହାତରେ ବନ୍ଧୁକ ଧରି ?' ତା'ର ଠିକ୍ ପରମୁହୂର୍ତ୍ତରେ ୱାଲ୍‌ଟର୍ ଚିତ୍କାର କରି ଉଠିଲା, 'ଚେୟାର୍‌ମ୍ୟାନ୍ ତମେ ବି ? ତମ ଦିହରେ ସିଲ୍‌କର ହାୱାଇନ୍, ଏ ଫୁଲ୍‌ପ୍ୟାଣ୍ଟ, ନୂଆଜୋତା । କଅଣ, କଥା କଅଣ ?'

ବ୍ରିଗେଟ୍ ବେଶ୍ ସମୟ ପାଇଁ ଚୁପ୍ ଚାପ୍ ଠିଆ ହେଲେ । ତା' ପରେ କହିଲେ, 'ୱାଲ୍‌ଟର୍, ତମେ ବୁଦ୍ଧିମାନ । ତମେ ବୁଝିବ ବୋଲି ମୁଁ କହୁଛି । ମୁଁ ଯେତେହେଲେ ଲୋକପ୍ରତିନିଧି । ଆଉ ଏମାନଙ୍କର ଚାପ ମୁଁ ସହି ପାରୁନାହିଁ । କାଲି ପୌରସଭା ଡକା ଯାଇଛି ଏବଂ ସେଇ ସଭାରେ ଚୂଡ଼ାନ୍ତ ହବ ମ୍ୟାଦାମ୍ ଦାଖ୍‌ନାସିଆନ୍‌ଙ୍କର ଦାନ ଗ୍ରହଣ କରାଯିବ କି ନାହିଁ । ସେଥିପାଇଁ ଏ ବନ୍ଧୁକ ନେଇ ଏତେ ରାତିରେ ମୁଁ ଏଠିକି ଆସିଛି । ଏ ବନ୍ଧୁକରେ ଗୁଳି ଭରାଅଛି । ତମେ ରଖ, ଯଦି ତମର କିଛି କାମରେ ଆସିପାରେ ।'

ୱାଲ୍‌ଟର ସାମାନ୍ୟ ହସିଲା ଆଉ କହିଲା, 'ବ୍ରିଗେଟ୍, ତମର ସହାନୁଭୂତି ପାଇଁ ଅଜସ୍ର ଧନ୍ୟବାଦ୍ । ମୁଁ ମନ ସ୍ଥିର କରି ନେଇଛି । ମୁଁ ଏ ଗାଆଁ ଛାଡ଼ି କୁଆଡେ ଯାଉନାହିଁ ବା ନିଜେ ଆତ୍ମହତ୍ୟା କରି ତମମାନଙ୍କୁ ଏକ ନିଷ୍ଠୁର ହତ୍ୟାର କଳଙ୍କରୁ ଏତେ ଶୀଘ୍ର ମୁକ୍ତି ଦଉନାହିଁ । ମୁଁ ଯା'ର ଶେଷ ପରିଣତି ଜାଣେ ଓ ତାହା ସର୍ବସମକ୍ଷରେ ହାଭେନ୍‌ର ନିର୍ଲ୍ଲଜ ଅଧିବାସୀମାନଙ୍କ ସାମ୍ନାରେ ପ୍ରମାଣ କରିବାକୁ ଚାହେଁ । କିନ୍ତୁ ଏତିକି ନିଶ୍ଚିନ୍ତ ରହ, କାଲିକାର ପୌର ସଭାରେ ମୁଁ ଯୋଗଦେବି ଓ ଜନତାର ନିଷ୍ପତ୍ତିକୁ ଗ୍ରହଣ ମଧ୍ୟ କରିନେବି ।'

ସେଦିନ ଗଭୀର ମନସ୍ତାପରେ ଓ ଦ୍ୱିଧା ବିଜଡ଼ିତ ପାଦରେ ପୌରସଭାର ସଭାପତି ବିଦାୟ ନେଇଥିଲେ । ଅନେକ ରାତିରେ ଫେରିଥିଲେ ୱାଲ୍‌ଟର୍‌ର ସ୍ତ୍ରୀ ଆଉ ପୁଅ ।

ତା' ଆରଦିନ ସଂଧ୍ୟା ସାତଟାରେ ପୌରସଭାର ବୈଠକ ବସିଥିଲା ଏବଂ ମ୍ୟାଦାମ୍ ଦାଖ୍‌ନାସିଆନ୍‌ଙ୍କର ପ୍ରଥମ ଆଗମନ ଦିନରେ ସମସ୍ତ ଗାଆଁ ଉପସ୍ଥିତ ଥିଲାପରି ସେଦିନ ମଧ୍ୟ ସମସ୍ତେ ଉପସ୍ଥିତ ଥିଲେ । ସେଦିନର କାର୍ଯ୍ୟସୂଚୀ ଅନୁଯାୟୀ କେବଳ ସଭାପତିଙ୍କର ବକ୍ତୃତା ଦବାର ଥିଲା । ସଭାପତି ବ୍ରିଗେଟ୍ ଗୁରୁଗମ୍ଭୀର କଣ୍ଠରେ ଆରମ୍ଭ କଲେ :-

'ବନ୍ଧୁଗଣ, ମ୍ୟାଦାମ୍ ଦାଖ୍‌ନାସିଆନ୍ ଏଇ ଗାଁଆର ଝିଅ । କୁମାରୀ ଜୀବନରେ ତାଙ୍କୁ ପ୍ରଲୋଭିତ କରି ଏକ ଅବାଞ୍ଛିତ ମାତୃତ୍ୱର ଗହ୍ୱରକୁ ଠେଲିଦବା ଯେ ଘୋର ଅନ୍ୟାୟ ଏଥିରେ ଆପଣମାନେ ମୋ ସହିତ ଏକମତ ହେବେ । ଆଉ କିଏ ହୁଏତ ଏହା ଭୁଲିଯାଇଥାନ୍ତା । କିନ୍ତୁ ମ୍ୟାଦାମ୍ ଦାଖ୍‌ନାସିଆନ୍‌ଙ୍କର ଗଭୀର ଜନ୍ମଭୂମୀପ୍ରୀତି ଆଜି ତାଙ୍କୁ ଆମମାନଙ୍କ ପାଖକୁ ଟାଣି ଆଣିଛି । ସେ ଯେଉଁ ବିଚାର ଆଶାକରୁଛନ୍ତି, ତାହା କେବଳ ତାଙ୍କର ନୁହେଁ, ତାହା ସମସ୍ତ ହାଭେନ୍ ଅଧିବାସୀଙ୍କର । ଏଠି ଟଙ୍କାଟା ବଡ଼କଥା ନୁହେଁ, ଏଠି ନ୍ୟାୟ ବିଚାରକୁ ଅଗ୍ରାଧିକାର

ଦିଆ ହଉଚି । ଏଠି ସମବେତ ସମସ୍ତ ଜନତାର ନ୍ୟାୟ ବିଚାର ପାଇଁ ଯେଉଁ ଜନ୍ମାଧିକାର ରହିଛି, ତାହା ଏଇ ଗାଁଆର ଝିଅ ମ୍ୟାଦାମ୍ ଦାଖନାସିଆନ୍‌କୁ ନଦବା ଏକ ଘୋର ଅନ୍ୟାୟ । ଆମ ଆଗରେ ଗୋଟିଏ ପ୍ରଶ୍ନ, ମ୍ୟାଦାମ୍ ଦାଖନାସିଆନ୍‌ଙ୍କର ସର୍ତ୍ତରେ ଆମେ ରାଜି କି ନାଁ ?'

ଘନ ଘନ ବିପୁଳ କରତାଳି ଭିତରେ ଜନତା ତା'ର ସମର୍ଥନ ଜଣେଇଲା । କିନ୍ତୁ ସଭାପତି ସେତିକିରେ କ୍ଷାନ୍ତ ହେଲେ ନାହିଁ । ସଭାପତି ପୁଣି ବଜ୍ରଗମ୍ଭୀର ଆହ୍ୱାନ ଜଣେଇଲେ, 'ଆଜି ଯଦି କେହି ହାଭେନ୍‌ର ଅଧିବାସୀ ଏ ପ୍ରସ୍ତାବକୁ ବିରୋଧ କରୁଛି , ସେ ହାତଟେକି ପାରନ୍ତି ।'

ଗୋଟିଏ ମଧ ହାତ ଉତ୍ତୋଳିତ ହେଲାନାହିଁ ଏବଂ ସେ ଜନସମାଗମର ଉପାନ୍ତରେ ୱାଇଟରର ସ୍ତ୍ରୀ ଓ ପୁଅ ଠିଆ ହେଇ କିଛି କ୍ୟାଣ୍ଡି କିଣି ଖାଉଥିଲେ ।

ଜନତା ତା'ର ରାୟ ଦେଇ ଦେଲା । ତା'ପରର ଗଳ୍ପଟା ଅତି ସଂକ୍ଷିପ୍ତ । ଫାଦର ନିକୋଲାସ ୱାଲ୍‌ଟର ନିକଟକୁ ଯାଇ ସାମାନ୍ୟ ପ୍ରାର୍ଥନା କଲେ ଓ ସେଇ ଜନତାର ଘେର ଭିତରେ ଇବି ଓ ଟବି ଆସି ୱାଲ୍‌ଟରର ଶ୍ୱାସରୁଦ୍ଧ କରି ୱାଇଟର୍‌କୁ ହତ୍ୟା କଲେ । ହାଭେନର ଡାକ୍ତର ସାର୍ଟିଫିକେଟ ଦେଲେ, ହୃଦଯନ୍ତ୍ର କ୍ରିୟା ହଠାତ୍ ଅଚଳ ହେଇଗଲା ।' ହାଭେନର ପୁଲିସ ସବ୍‌ଇନ୍‌ସ୍‌ପେକ୍ଟର ସାର୍ଟିଫିକେଟ୍ ଦେଲେ ଯେ ୱାଇଟରଙ୍କର ମୃତ୍ୟୁ ସଂପୂର୍ଣ୍ଣ ସ୍ୱାଭାବିକ ପରିସ୍ଥିତିରେ ଘଟିଛି ।

ଠିକ୍ ଏତିକିବେଳେ ଏକ ରକ୍ତ ଗୋଲାପର ଗୁଚ୍ଛ ଧରି ଆସିଲେ ମ୍ୟାଦାମ୍ ଦାଖନାସିଆନ୍ । ଆଦେଶ ଦେଲେ ୱାଇଟରର ଶବକୁ ଗ୍ରୀବାଅବଧି ଘୋଡ଼େଇ ଦବା ପାଇଁ । ଅଦେଶ ତୁରନ୍ତ ପାଳନ କରାଗଲା ଓ ତା'ପରେ ପରେ ନିଜହାତରେ ମ୍ୟାଦାମ ଦାଖନାସିଆନ୍ ରକ୍ତ ଗୋଲାପର ଗୁଚ୍ଛ ୱାଲ୍‌ଟରର ମୃତ ଦେହ ଉପରେ ରଖିଲେ ।

ଜନତାର ଉତ୍କଣ୍ଠା ଅବସାନ ହେଲା, ଯେତେବେଳେ ମ୍ୟାଦାମ୍ ଦାଖନାସିଆନ୍ ଚାରି କୋଟି ଡଲାର୍‌ର ଏକ ଚେକ୍ କାଟି ପୌର ସଭାର ସଭାପତିଙ୍କ ଆଡ଼କୁ ବଢ଼େଇ ଦେଲେ ।

ଗପଟା ଏତିକିରେ ଶେଷ ହେଲା । ଯା' ପରେ କଅଣ ହେଲା ହାଭେନ୍‌ର, ବା କୁଆଡେ ଗଲେ ମ୍ୟାଦାମ୍ ଦାଖନାସିଆନ୍ ଏ ବିଷୟରେ ନାଟକ ନୀରବ । ତମେତ ବୁଝିପାରୁଚ, ଏ'ଟା ନାଟକ । ସବୁକଥାର କେବଳ ସୂଚନାଇ ଦବା ଯଥେଷ୍ଟ । ପରେ କେବେ ପୁଣି ଚିଠିଦେବି ।

ତୁମର
ମୁଁ

ପୁନଶ୍ଚ :- ଏତେ ଲମ୍ୱା ଚିଠି ଏକା ଦିନକେ ସାରି ହୁଏନାଁ । ଆରମ୍ଭ କରିବା ଦିନଠାରୁ ମାତ୍ର ଅଠଚାଳିଶି ଘଣ୍ଟା ବିଳମ୍ବ ହେଇଚି । କିନ୍ତୁ ଏ କଅଣ ଆଜି ଖବର କାଗଜରେ ମୁଁ ପଢୁଚି ? ମ୍ୟାଦାମ୍ ସେଁସାଁ ଯେ ଦିନେ ମଧୁପୁର ଗାଁଆରେ ଜନ୍ମଗ୍ରହଣ କରିଥିଲେ ଏବଂ ଯାହାଙ୍କର ତତ୍‌କାଳୀନ ନାଆଁ ଥିଲା ସୁଜାତା, ସେ ଆସନ୍ତା ରବିବାର ମଧୁପୁର ଆସୁଛନ୍ତି ? ତମେ କଅଣ ହେଲିକପ୍ଟରରେ ଆସିବ, ନାଁ ହଠାତ୍ ଏଠି ଓହ୍ଲେଇ ପଡ଼ିବ ରାଜଧାନୀ ଏକ୍‌ସପ୍ରେସ୍‌ର ଚେନ୍ ଟାଣି ? ତମେ କାହିଁକି ଆସୁଚ ? କିଏ ତମର ଅଛି ଏଠି ? ଆଜି ମଧୁପୁରରେ ଠିକ୍ ସେଇ ଆୟୋଜନ ଚାଲିଛି, ଯାହା ଚାଲିଥିଲା ହାଭେନ୍‌ରେ । କିଛି ଲୋକ ଜାଣନ୍ତି ମୋର ଶୈଶବରେ ତମ ସାଙ୍ଗେ ପରିଚୟ ଥିଲା ବୋଲି । ସେମାନେ ଦଳ ବାନ୍ଧି ଆସୁଛନ୍ତି । ସେମାନେ ମତେ ବାଧ କରିବେ ଅଭ୍ୟର୍ଥନା ସମିତିର ସଭାପତି ହବାକୁ । କିନ୍ତୁ ସୁଜାତା ! ମୁଁ ତମର ବା କଅଣ କରିଛି ? କେଉଁ ମଣିଷ କୈଶୋର ଅତିକ୍ରମ କରି ଆସିନାହିଁ ? କାହାକୁ ଭଲ ଲାଗେନାହିଁ ଜ୍ୟୋସ୍ନା, ଆଉ ସ୍ଫଟିକ ପରି ଫୁଟିଥିବା ମଲ୍ଲୀଫୁଲ ? କିନ୍ତୁ ତମେତ ଜାଣ ମ୍ୟାଦାମ୍ ସେଁସାଁ ମୁଁ ୱାଲ୍‌ଟର୍ ପରି କିଛି କରିନାହିଁ । ମୁଁ କିଛି ଅନ୍ୟାୟ କରିନାହିଁ । କିନ୍ତୁ ତଥାପି ତମେ କାହିଁକି ଏଇ ଛୋଟ ମଧୁପୁର ଗାଁଆରେ ଓହ୍ଲାଉଛ ? ଏଟା କଅଣ କେବଳ ତମର ଖିଆଲ୍ ? ସତରେ କଅଣ ତମର ଏତେ ଦିନ ପରେ ମନେ ପଡ଼ିଛି ତମ ଗାଆଁର ଆମ୍ବତୋଟା, କଇଁଫୁଲ ଫୁଟିଥିବା ପୋଖରୀ, ଶଗଡ଼ର ଦଣ୍ଡାରାସ୍ତା ? ବିଶ୍ୱାସ କର, ମୁଁ ଭୟ ପାଇ ଯାଇଛି । ତମରବି ତ ମ୍ୟାଦାମ୍ ଦାଖ୍‌ନାସିଆନଙ୍କ ପରି ଅନେକ ଟଙ୍କା ଅଛି । ଏଇ ମଧୁପୁର ଗାଆଁର ଲୋକେ ହାଭେନ୍ ଗାଁଆର ଲୋକଙ୍କ ପରି ଦରିଦ୍ର ପ୍ରପୀଡ଼ିତ ଓ ଜୀବନର ସାମାନ୍ୟତମ ଉପଭୋଗରୁ ବଞ୍ଚିତ ।

କିନ୍ତୁ ସୁଜାତା, ମୁଁ ୱାଲ୍‌ଟର୍ ନୁହେଁ । ମୋ' ପାଖରେ ଏବେ ବି ଗୁଳିଭରା ଏକ ବନ୍ଧୁକ ଉଦ୍ୟତ ଅଛି । ସୁଜାତା ମୁଁ ତୁମକୁ ହତ୍ୟା କରିବାକୁ ଘୃଣା କରିବି, କିନ୍ତୁ ତା'ଅପେକ୍ଷା ଅନେକ ବେଶି ଘୃଣା କରିବି ୱାଲ୍‌ଟର୍ ପରି ଆତ୍ମସମର୍ପଣ କରିବାକୁ ।

ତମେ ଆସ । ମୁଁ ତମର ଅପେକ୍ଷା କରୁଛି ।

ତମର ତଥାପି ଏକାନ୍ତ

ମୁଁ

# ଏକାଦଶୀ

ଅବିସ୍ମରଣୀୟା ସୁଜାତା,

ବହୁଦିନ ତମ ପାଖକୁ ଚିଠି ଲେଖିପାରି ନାହିଁ । ତମସହିତ ଦେଖା କରିପାରି ନାହିଁ ମଧ୍ୟ । ମୁଁ କେବେ କେବେ ହଠାତ୍ ଇଦ୍‌ର ଜହ୍ନ, ନ ହେଲେ ଡିମିରିର ଫୁଲ ଦେଖିଥିବି; କିନ୍ତୁ ତମ ଦେଖା ମିଳିବା ସତରେ ମୁସ୍କିଲ । ଅତୀତରେ ଜାହାଙ୍ଗିର୍ ବୋଲି ଜଣେ ସମ୍ରାଟ ଭାରତ ଭୂଖଣ୍ଡର ଏକଛତ୍ରପତି ଥିଲେ । ପିଲାଙ୍କର [illegible] ଇତିହାସ ବହିରେ ଏ ବୃତ୍ତାନ୍ତ ଲେଖାଅଛି । କାଳେ କେହି ଦୁଃଖୀ ତାଙ୍କ [illegible] ଦର୍ଶନାଭିଳାଷୀ, କେହି ଆର୍ତ୍ତ ପ୍ରଜା, ତାଙ୍କର ଦେଖା ନ ପାଇ ଫେରିଯିବେ, ସେଥିପାଇଁ ତାଙ୍କ ସିଂହଦ୍ୱାରରେ ଏକ ବିରାଟ ଘଣ୍ଟା ଖଞ୍ଜା ଯାଇଥିଲା ଏବଂ ସମୟ ନିର୍ବିଶେଷରେ ଯେ କେହି ପ୍ରଜା ଘଣ୍ଟା ଟାଣି ସମ୍ରାଟଙ୍କର ଦର୍ଶନ ପାଇପାରୁଥିଲା ଓ ତା'ର ଅର୍ଜି ପେଶ୍ କରିପାରୁଥିଲା । ତମର ସିଂହଦ୍ୱାରରେ ଘଣ୍ଟା ନାହିଁ, ଅଥଚ ଅନେକ ସିଂହ ଅଛନ୍ତି ।



ଗୋଟାଏ କଥା ପଚାରିବି, ସତ କହିବ ? ତମେ କେତେଦିନ ହେଲା ଜହ୍ନ ଦେଖିନାହଁ ? ଏ ସହରଗୁଡ଼ାକରେ ଅନେକ ବଡ଼ ବଡ଼ କୋଠା, ତା' ଭିତର ଦେଇ ଚାଲୁ ଚାଲୁ ଯେଉଁ ଖଣ୍ଡେ ଆକାଶ ଦେଖାଯାଏ, ତା'ର ଚଉଡ଼ା ମୋ ଝିଅର ରିବନର ଚଉଡ଼ା ସଙ୍ଗେ ସମାନ । ଘରେ ଥିଲାବେଳେ କବାଟ ଝରକା ବନ୍ଦ ଆଉ ବାହାରକୁ ଗଲାବେଳେ ମଟରର ଛାତଟା ଜହ୍ନକୁ ଏକବାରେ ଘୋଡ଼େଇପକାଏ । ଅବଶ୍ୟ ଭି. ଆଇ. ପି., ବିଜ୍‌ନେସ୍ ହାଉସ୍ ଆଉ ସ୍ମଗଲର୍‌ମାନଙ୍କର କଥା ଭିନ୍ନ; କାରଣ ସେମାନଙ୍କର କନ୍‌ଭର୍ଟିବ୍‌ଲ ଗାଡ଼ି ଉପରେ ଚନ୍ଦ୍ର ତା'ର ଅକୃପଣ କିରଣ ଢାଳିଥାଏ । ତଥାପି ସେମାନେ ଦଳ ପରିବର୍ତ୍ତନ, ସେୟାର ମାର୍କେଟ୍ ବା ଗୁଇନ୍ଦା ବିଭାଗ ପ୍ରତି ଏତେ ସଜାଗ ଥାଆନ୍ତି

ଯେ, ଆକାଶର ପଡ଼ିଆରେ ଜହ୍ନ ମାତାଲ ପରି ଟଳି ଟଳି ଆସ୍ତେ ଆସ୍ତେ ଯେତେ ଚାଲୁନା କାହିଁକି ସେମାନଙ୍କର ଦୃଷ୍ଟିରେ ପଡ଼େ ନାହିଁ । ସେମାନଙ୍କର ସମସ୍ତ ଐଶ୍ୱର୍ଯ୍ୟ, ଖ୍ୟାତି ସତ୍ତ୍ୱେ ମୋର ବେଳେ ବେଳେ ସେମାନଙ୍କ ପାଇଁ ପ୍ରଚୁର କରୁଣାର ଉଦ୍ରେକ ହୁଏ ।

ହାରାହାରୀ ଷାଠିଏଟା ବର୍ଷର ଦୌଡ଼ । ପନ୍ଦର ବର୍ଷ କଟିଗଲା ଶୈଶବ ଆଉ କୈଶୋରରେ । ଦଶବର୍ଷ କଟିଗଲା, ବାର୍ଦ୍ଧକ୍ୟର ପ୍ରସ୍ତୁତି ଭିତରେ । ବାକି ମଝିରେ ଯେ କେଇଟା ବର୍ଷ ରହିଲା, ସେଥିରେ କେତେଟା ମାତ୍ର ଜହ୍ନ !

ତମେ ତ ଜାଣିଚ ଫ୍ରାନ୍‌ସର ସରକାର ଯାହା, ମାଟିର ମାଠିଆ ସେଇଆ । ବେଶ୍ କିଛିଦିନ ତଳେ ମୁଁ ସମ୍ବାଦପତ୍ରରେ ପଢ଼ିଥିଲି ଯେ ତିନିମାସ ତଳେ ଗଢ଼ା ହୋଇଥିବା ଫ୍ରାନ୍‌ସ ସରକାରର ଅକସ୍ମାତ୍ ପତନ ହୋଇଛି । କେଜାଣି କାହିଁକି ମୁଁ ଭାରି ଖୁସି ହେଇଯାଇଥିଲି । ଯାହାହେଉ, ସରକାରଟା ଗଲା ଆଉ ତା' ସହିତ ଗଲା ସବୁ ଆଇନ୍‌କାନୁନ୍ ଆଉ ଶୃଙ୍ଖଳା । ତମେ ତ ଜାଣ ମୁଁ ଛୁଟିର କେତେ ପ୍ରିୟ । କିଛି କାମ ନାହିଁ । ତରତର ହେବାର କୌଣସି ପ୍ରୟୋଜନ ନାହିଁ । ହେମନ୍ତର ଖରାକୁ ପିଠିକରି ଖବରକାଗଜ ପଢ଼ ନ ହେଲେ ଗପର ଆସର ଜମାଅ । ଧୀରେଧୀରେ କଅଁଳ ଖରା ସାମାନ୍ୟ ଉଷ୍ଣ ହେଇଆସିବ ଏବଂ ଉଷ୍ଣ ହେଇଥିବ କି ନାହିଁ, ହଠାତ୍ ପୁଣି ମଉଳି ଆସିବ ଶୀତଦିନର ଖରା । ପଶ୍ଚିମ ଆକାଶରେ ହଇଚଇ କାଣ୍ଡ । ଆକାଶର କାନ୍‌ଭାସକୁ କେତେ ରଙ୍ଗରେ ବର୍ଣ୍ଣିଳ କରି, ଚିତ୍ରିତ କରିଛନ୍ତି କେତେ ପିକାସୋ ବା'କେତେ ମାଇକେଲ ଆଞ୍ଜେଲୋ ।

ହଁ, ମୁଁ ଭାବିଥିଲି ସରକାରର ପତନ ପରେ ସ୍କୁଲ ପିଲାମାନେ ବଣଭୋଜି କରିବାକୁ ଯିବେ, ପୋଲିସମାନେ ନିଜ ନିଜ ଗାଁଆକୁ ବାହୁଡ଼ିଯିବେ, ଜେଇର ଫାଟକ ମୁକୁଳା କରିଦିଆଯିବ ଏବଂ ବନ୍ଦୀମାନେ ଅଜସ୍ର କୋଳାହଳ କରି ସେମାନଙ୍କର ପରିବାର ବା ପ୍ରିୟଜନମାନଙ୍କ ପାଖକୁ ଲେଉଟି ଆସିବେ । ପୁଲିସ୍ ଗୁଡ଼ାକୁ ମୁଁ ଦି' ଆଖିରେ ସହିପାରେନା । ସେମାନେ ବାଲିଯାତ୍ରା ପଡ଼ିଆରେ ମଧ ନିୟନ୍ତ୍ରଣ ଜାରି କରନ୍ତି । ଏବାଟେ ଯାଇପାରିବନି, ସେଠି ବସିପାରିବନି, ଅନ୍ଧାର ଭିତରେ ଓ ଝିଅମାନଙ୍କ ସାଙ୍ଗରେ ଚୁପ୍ ଚୁପ୍ କଥାବାର୍ତ୍ତା ହୋଇପାରିବନି । ମୋର ଧାରଣା ଆମର ଏଠିକା ପୁଲିସ୍ ଯାହା ପୃଥିବୀର ସବୁ ଦେଶର ପୁଲିସ୍ ମଧ ସେଇଆ ।

ତମେ ଗାଡ଼ିରେ ଯାଉଚ । ଟ୍ରାଫିକ୍ ପୁଲିସର ଗୋଟାଏ ପାପୁଲି ତମର ଗତି ବ୍ୟାହତ କରିବାକୁ ଯଥେଷ୍ଟ । ମୁଁ ତ ସତକୁ ସତ ରାଗିଯାଏ । ପ୍ରତିଶୋଧ ନବାପାଇଁ ଦିନେ ଯାଇ ଠିଆହେବି ସେଇ ଟ୍ରାଫିକ୍ ଆଇଲ୍ୟାଣ୍ଡ ଉପରେ ଏବଂ ହ୍ୱିସିଲ୍ ଦେଇ

ଦୁଇ ପାପୁଲିରେ ଜନପଥ ଓ ରାଜପଥର ସମସ୍ତ ଯାନବାହାନ ଚଳାଚଳକୁ ନିଶ୍ଚଳ କରିଦେବି । କିଛି ସମୟ ପାଇଁ ନୁହେଁ, ଘଣ୍ଟା ଘଣ୍ଟା ଧରି, ଯେତେ ପର୍ଯ୍ୟନ୍ତ ମୁଁ ଅଟକେଇ ପାରେ । ଭାରି ମଜାର ଦୃଶ୍ୟ ହେବ । ଗାଡ଼ି ପରେ ଗାଡ଼ି ଯୋଡ଼ି ହେଇଗଲାଣି ମାଇଲ୍ ମାଇଲ୍ ଧରି । ଗୋଟାଏ ଧାଡ଼ିକୁ ନିଆଯାଉ । ଛୋଟ ଟୁକ୍ ଟୁକ୍ ଲାଲ୍ ରଙ୍ଗର ଖେଳନା ପରି ଖଣ୍ଡେ ଗାଡ଼ି ! ତା'ପଛକୁ ଗୋଟାଏ ଅସୁର ପରି ଲେଲ୍ୟାଣ୍ଡ ଟ୍ରକ୍ । ବିଉଟି ଆଣ୍ଡ ଦି ବିଷ୍ଟ୍ । ତା' ପଛକୁ ହୁଏତ ଦି'ଖଣ୍ଡ ଟ୍ୟାକ୍ସି ଏବଂ ତା' ପଛକୁ ଗୋଟାଏ ବିରାଟ ପ୍ଲାଇମଥ୍ ଗାଡ଼ିରେ ବସିଛନ୍ତି ଜଣେ ସ୍ଥୂଳକାୟ ଭଦ୍ରଲୋକ । ଠିକ୍ କହିହୁଏନା, ସେ ହୁଏତ ହେଇପାରନ୍ତି ଶେଠଜୀ, ନ ହେଲେ ଜଣେ ବିଶିଷ୍ଟ ରାଜନୈତିକ ନେତା । ମୁଁ ଜାଣେ ବ୍ୟାପାରଟାରେ ହଇଚଇ ପଡ଼ିଯିବ । ମତେ ତତ୍‌ଦଣ୍ଡେ ସରକାରୀ ଚାକିରିରୁ ଡ଼ିସ୍‌ମିସ୍ କରିବା ପାଇଁ ଅମଲାତନ୍ତ୍ର ଖୁବ୍ ଚଞ୍ଚଳ ହେଇଉଠିବ; କିନ୍ତୁ ଯେତେ ଚଞ୍ଚଳ ହେଲେ ବି ପୁଣି ତ ସେଇ ଆଇନ୍‌କାନୁନ୍ ଅଛି । ମତେ ନୋଟିସ୍ ଦିଆଯିବ କାରଣ ଦର୍ଶାଇବାକୁ ଯେ, କାହିଁକି ମତେ ସରକାରୀ ଚାକିରିରୁ ବହିଷ୍କାର କରାନଯିବ । ମୁଁ ତା'ର ଜବାବ ଦେବି ଇତ୍ୟାଦି ଇତ୍ୟାଦି । ଇଏ କିଛି କମ୍ ସମୟର କଥା ନୁହେଁ । ସେତେବେଳକୁ ଗାଡ଼ିର ଆରୋହୀମାନେ ହର୍ଣ୍ଣ ଦେଇ ଦେଇ କ୍ଲାନ୍ତ ହୋଇ ନିଦରେ ଶୋଇ ଉଠି ଗାଡ଼ି ଛାଡ଼ିଦେଇ ଘରକୁ ରମାନା ହେବେଣି । ଖବରକାଗଜ ବଡ଼ ବଡ଼ ହରଫ୍‌ରେ ଲେଖିବେଣି ଏ ସମ୍ବାଦ ଏବଂ ବିରୋଧୀଦଳର ନେତାମାନେ ଆସେମ୍ବ୍ଲି ଗୃହରେ ଏଇ ଘଟଣା ଉପରେ ସରକାରଙ୍କୁ ଇସ୍ତଫା ଦବାକୁ ବାଧ କରିବେଣି । ହଏତ ମୋ ଚାକିରି ବରଖାସ୍ତ ହବ; କିନ୍ତୁ ମୁଁ ସେଇଠି ଠିଆହେଇ ଘଣ୍ଟା ବଜେଇବି, ହାଇକୋର୍ଟର ଆଉ ସୁପ୍ରିମ୍‌କୋର୍ଟର ନ୍ୟାୟାଧୀଶମାନଙ୍କର । ଇଏ କଅଣ କଥାର କଥା ନା କଅଣ ? ନାଗରିକ ଅଧିକାର କଥା ତ ତମେ ସମ୍ବିଧାନରେ ହାତକାଟି ଲେଖିଦେଇଚ । ନ୍ୟାୟାଧୀଶମାନେ ଅତି ଗମ୍ଭୀର ଭାବରେ ତାଙ୍କର ଶୁକ୍ଲକେଶ ବା ଚନ୍ଦାମୁଣ୍ଡଗୁଡ଼ିକୁ ଏକତ୍ରିତ କରି ଗମ୍ଭୀର ଭାବରେ ମୋର ଆବେଦନ କଥା ଆଲୋଚନା କରୁଥିବେ । ସମୟ ବହି ଚାଲିଥିବ ମାସ ମାସ । ଛକର ଦୁଇ ରାସ୍ତାରେ ତଥାପି ଗାଡ଼ିସବୁ ଠିଆହୋଇଥିବେ ନିଶ୍ଚଳହୋଇ; କିନ୍ତୁ ଛକର ଆଉ ଦୁଇ ରାସ୍ତାରେ ଚାଲିଥିବ ପ୍ରାଣର ଉତ୍ସବ । ଦଳେ ପିଲା କ୍ରିକେଟ୍ ଖେଳୁଥିବେ ତ ଦଳେ ପିଲା ଉଡ଼ାଉଥିବେ ଗୁଡ଼ି । ପୁଣି ଦଳେ ପିଲା ରାସ୍ତାକୁ କାନ୍‌ଭାସ୍ କରି ଆଙ୍କି ଚାଲିଥିବେ ଉଭଟ ଚିତ୍ର । ସେମାନେ କୋରସ୍‌କରି କହୁଥିବେ, 'ବାଃ ବାଃ ପୁଲିସ୍ ଭାଇ, ତମେ ଏତେ ଦିନକେ ଗୋଟାଏ ହାତ୍ ଦେଖେଇଲ ।'

ବନ୍ଦ ହେଇଯାଉ ସେକ୍ରେଟାରୀଏଟ୍ । ବନ୍ଦ ହେଇଯାଉ କଳକାରଖାନା । ପିଲାମାନେ ତ କିଛି ମାସ ଧରି ହସଖୁସି ଆଉ ମଉଜ କରିଗଲେ । ଏତେବଡ଼ ଦୀର୍ଘ

ରିକ୍ରିଏସନ୍ କୌଣସି କୌଣସି ଦେଶର ପିଲେ କୁତ୍ରାପି ପାଇ ନଥିବେ । ସତ୍ୟଜିତ୍ ରାୟଙ୍କର ଛବିରେ ଯେପରି କୌଣସି କୌଣସି ଚରିତ୍ର ହଠାତ୍ ଧଳା ହେଇ ଯାଆନ୍ତି, ଠିକ୍ ସେମିତି ନ୍ୟାୟାଧୀଶମାନେ ଆଲୋଚନା କରି କରି ହଠାତ୍ ଧଳା ହୋଇଯିବେ । ସେମାନେ ଯେମିତି ଗୋଟାଏ କେଉଁ ଗ୍ରହର ଅଧିବାସୀ । ରାୟଟା ଏତେ ସହଜ ନୁହଁ । ଏକ କୃତ୍ରିମ ଜରୁରୀକାଳୀନ ପରିସ୍ଥିତି ପାଇଁ ମଟରଗୁଡ଼ାକ କ୍ଷିପ୍ରଗତିରେ ଅଯଥା ଏପଟ ସେପଟ ଧାଇଁ ବୁଲିବେ ନାଁ ଦେଶର କିଶୋର କିଶୋରୀମାନେ ନାଚିକୁଦି, ହସି ଗାଇ ରାଜପଥକୁ ଏକାକାର କରିଦେବେ ! ଆଉ ଟିକିଏ ସୂକ୍ଷ୍ମଭାବରେ ଚହେଇ ଦେଖିଲେ ଦେଖାଯିବ ଯେ, ଏଦେଶକୁ ମଳୟ, ଚନ୍ଦ୍ର, ବର୍ଷା ପୁଷ୍ପିତା କରିବ ନା ଚିମିନିର ଧୂଆଁ, ମଟରର ବିଷାକ୍ତ ବାଷ୍ପ, ରେଳଇଞ୍ଜିନ୍‌ର ଧୂଆଁ, କାରଖାନାର ବିଷାକ୍ତ ପଚା ପାଣି ଏଦେଶରେ ଯକ୍ଷ୍ମା, କର୍କଟ ରୋଗର ବୀଜାଣୁ ବୁଣିବ ?

ମୋର ପ୍ରଥମ ପ୍ରଶ୍ନ ତଥାପି ଅମୀମାଂସିତ । ତମେ କେତେଦିନ ହେଲା ଜହ୍ନ ଦେଖିନାହଁ ? ଯଥାର୍ଥରେ ଚନ୍ଦ୍ରାହତ ଶବ୍ଦଟା ବ୍ୟବହାର କରାଯାଇଚି । ଜହ୍ନର ଏପରି ଗୋଟାଏ ଅଦ୍ଭୁତ ଶକ୍ତି ଅଛି, ଯାହା ମଣିଷକୁ ବେଳେବେଳେ ପାଗଳ କରିଦବା ସମ୍ଭବ । ତା'ନ ହେଲେ କି ମୁନ୍‌ଗେଜିଂ ପାଇଁ ଲୋକମାନେ ସଂଘ ଗଢିଥାଆନ୍ତେ । ଏଇ ଧର, ତମର ଆଉ ମୋର ଭଲପାଇବାର କଥା । ଆମେତ କେହି କାହାକୁ ଚିହ୍ନି ନଥିଲେ । କିଏ ଆମକୁ ଚିହ୍ନେଇଦେଲା ? ତମର ମନେ ନ ଥିବ, ମନେ ନଥିବା ମଧ ଉଚିତ୍ । ସବୁ ଅଦରକାରୀ କଥା କିନ୍ତୁ ମୋର ମନେଅଛି, କାରଣ ମୁଁ ଅଧୁନା ସମାଜରେ କୌଣସି ବିଶେଷ ଦରକାରୀ କାର୍ଯ୍ୟ କରିବାରେ ବ୍ୟସ୍ତ ନାହିଁ ।

ମୋର ସ୍ମୃତି ଡିଳଚଞ୍ଚଳିତ ବନଜ୍ୟୋତ୍ସ୍ନା ପରି ମୋ ସହିତ ବରାବର ଲୁଚକାଳି ଖେଳୁଚି । ଗୋଟାଏ ରଙ୍ଗ ଛାଡି ଯାଇଥିବା ଭଙ୍ଗା ଦୋତାଲା ଘର । ସେଠି ବୋଧହୁଏ କାଠର ସିଡ଼ି ଲାଗିଥିଲା କାହିଁ କୋଉ ମାନ୍ଧାତା ଅମଳରୁ । ବର୍ଷା, ଜାଡ଼ର ଆଉ ଖରା ଖାଇ ଖାଇ ସେଇ କାଠର ପାହାଚଗୁଡାକର ଜୀର୍ଣ୍ଣ କଙ୍କାଳ ଦେଖି ହେଉଥିଲା । ତମେ ଖାଲି ଚୁପ୍‌ଚାପ୍ ଚିଠି ପଢିଯାଉଚ । ସେମିତି ହେଲେ ଚଳିବ ନାହିଁ । ଜୀବନର ଏକ ବିସ୍ମୃତ ଅଧାୟ ହେଜ କରିବାକୁ ହେଲେ, ପାଖାପାଖି ବସିରହି ନିଠେଇ ନିଠେଇ ସବୁ କଥା ମନେ ପକାଯିବା ଉଚିତ୍ । କଥା କଥାରେ ଛୋଟ ଛୋଟ ତର୍କ ବି ଆରମ୍ଭ ହେବା ଉଚିତ୍ । ଯଥା, ସେଇ ସିଡ଼ିରେ କାଠର ପାହାଚ ଥିଲା କେତେଟା, (ମୋର ମନେହୁଏ ଏଗାରଟା) ବା ସେଇ ପାହଚ ଭିତରୁ କୋଉ ପାହାଚଟା ହଜିଯାଇଥିଲା ?

ଅଙ୍କ ଚଉଡ଼ାର ଲମ୍ବା ଲମ୍ବା କାଗଜରେ ଆମେ ଅନେକ ସମୟ ଧରି ଲେଖୁଥିଲୁ । ରାତି କେତେ ହେଲାଣି ଜାଣିବାର ଜୁ' ନାହିଁ । ତମର ତ ଘଣ୍ଟା ନ ଥିଲା, ଓ ମୋର ସେଇ କଳା ଡ଼ାଏଲ ଥିବା ଛୋଟ ଘଣ୍ଟାଟି କିଏ ଜଣେ ମାଗିନେଇ

ଥିଲା; କିନ୍ତୁ ରାତ୍ରିର ଗଭୀରତା ମାପିବା ପାଇଁ ଘଣ୍ଟାର ବା ପ୍ରୟୋଜନ କଅଣ ? ସବୁ କେମିତି ଚୁପ୍‌ଚାପ୍ ହେଇ ଆସେ, ଏକଦମ୍ ଚୁପ୍‌ଚାପ୍ । ପୃଷ୍ଠା ଓଲଟେଇବାର ଶବ୍ଦ କାନକୁ କର୍କଶ ମନେହୁଏ । କୂଅ ଭିତରେ ଗୋଟାଏ ବେଙ୍ଗର ସାମାନ୍ୟ ବିରକ୍ତିସୂଚକ ଶବ୍ଦ ମନେହୁଏ, ଯେପରି ଗୋଟାଏ ସାଇରେନ୍ ବାଜୁଚି । ଘରଚଟିଆ ପରି ଦିନତମାମ ଯେଉଁ ରିକ୍‌ସାଗୁଡ଼ାକ ରାସ୍ତାସାରା ଫୁରଫାର ହଉଥାଆନ୍ତି, ସେମାନେ ଦୋକାନ ଘରମାନଙ୍କରେ ସ୍ଥାବର ହେଇଗଲେଣି । ଠିକ୍ ସେତିକିବେଳେ ଆମେ ଘରକୁ ଫେରୁଥିଲୁ । ଆଉ ମୁଁ ସେତିକିବେଳେ ତମକୁ ସତର୍କ କରିଦଉଥିଲି ଯେ, ସିଢ଼ିର ସପ୍ତମ ପାହାଚଟା ବିଲ୍‌କୁଲ୍ ଫେରାର୍ । ଯାହା ତମେ ପ୍ରାୟ କରିଥାଅ, ଠିକ୍ ସେଇଆଇ କଲ । ପ୍ରତିବାଦ କରି କହିଲ, ସପ୍ତମ ନୁହେଁ ଅଷ୍ଟମ । ଅନ୍ୟଦିନ ଭିନ୍ନ ଅବସ୍ଥା ଉପୁଜିଥାଆନ୍ତା । ବାଜିମାରି ମୁଁ, ନ ହେଲେ ତମେ ଅଧକପେ ଚା', ଟାଉନ୍ ବସ୍ ଟିକଟ୍ ଜିତିଯାଇଥାଆନ୍ତେ ।

ସେଦିନ ଥିଲା ଏକ ମୋହ ଆବିଷ୍ଟ ରାତ୍ରି । ଉଡ଼ିଯାଉଥିବା ବାଦୁଡ଼ିମାନଙ୍କର ଡେଣାର କମ୍ପନ ପର୍ଯ୍ୟନ୍ତ ଆମେ ଶୁଣିପାରୁଥିଲେ । ରାତ୍ରି ଥିଲା ଚମ୍ପେଇନେଉଲର ପିଠିପରି ମସୃଣ, ଚିକ୍ ଚିକ୍ ଓ ପିଚ୍ଛିଳ । ଅପହୃତ ପାହାଚଟାକୁ ଅତିକ୍ରମ କରିବା ପାଇଁ ମୁଁ ତଳ ପାହାଚରେ ଠିଆହେଇ ତମର ହାତ ଧରି ତଳକୁ ଆସିବା ପାଇଁ ସାହାଯ୍ୟ କରୁଥିଲି । ମୋର ଆଜି ବି ମନେ ଅଛି, ଦୁଇଟା ହାତର ପଞ୍ଝା ପରସ୍ପରକୁ କେତେ ନିବିଡ଼ଭାବରେ ବାନ୍ଧି ରଖିଥିଲା । ଆମେ ହଠାତ୍ ଆବିଷ୍କାର କରିଥିଲେ ଯେ, ଆମ ଉପରେ ଗୋଟିଏ ନିର୍ଲଜ୍ଜ ଜହ୍ନ ଦଉଡୁଛି । ସେଇ ମୁହୂର୍ତ୍ତରେ ବୋଧହୁଏ କିଛି ବାସ୍ତବତା, କିଛି ସ୍ୱପ୍ନ ସବୁ ଏକାଠି ମିଶି ଏକ ପ୍ରଚଣ୍ଡ ସ୍ରୋତରେ ପ୍ରବାହିତ ହେଉଥିଲା । କେତେ ରାତି ରାତି ବସି ତ କେତେ ଗଳ୍ପ, ତର୍କ ଆଲୋଚନା କରିଚେ, କେତେ ରାତିରେ ପାଖକୁପାଖ ଲାଗି ନିଃଶବ୍ଦ ପଦଚାରଣା କରିଚେ; କିନ୍ତୁ ସେଦିନ କଅଣ ହେଲା ? ମୋର ତ ମନେହୁଏ, ସେଦିନ ସେଇ ଜହ୍ନ ଆମ ଦି ଜଣଙ୍କୁ ଦି' ଜଣଙ୍କ ପାଖରେ ଧାରପକେଇ ଦେଇଥିଲା । ଆମେ ଦୁଇଜଣଯାକ ସେଦିନ ଖୁବ୍ ଲାଜ ପାଇଥିଲେ । ତମର ମୁହଁର ତ୍ୱକ୍ ସେଦିନ ଅକସ୍ମାତ୍ ଉଜ୍ଜ୍ୱଳ ହୋଇ ଉଠିଥିଲା, ଯେପରି କିଏ ତମର ଗଣ୍ଡଦେଶରେ ଛୋଟ ଟୋପାଏ ଅଲିଭ୍ ଅଏଲ୍ ବାରମ୍ବାର ଘସି ଘସି ଉଜ୍ଜ୍ୱଳ ଓ ମସୃଣ କରିଦେଇଛି । ସେଦିନ ରାଜପଥରେ ଚାଲୁ ଚାଲୁ ମୋର ମନେହେଲା, ଆମେ ଯେପରି ସେଇ ଅଚେତ ନଗରୀର ଏକମାତ୍ର ଅବଶିଷ୍ଟ ଅଧିବାସୀ । ଆମର ଆଉ କାହାଠାରେ କିଛି ପ୍ରୟୋଜନ ନଥିଲା । ଆମେ ପ୍ରତ୍ୟେକ ଅପରର ପରିପୂରକ, ସ୍ୱୟଂସମ୍ପୂର୍ଣ୍ଣ । ପ୍ରଥମଥର ପାଇଁ ମତେ ଚାଲିବାକୁ ଭୟ ଲାଗିଥିଲା । କେତେ ବା ବାଟ, ଚାହୁଁ ଚାହୁଁ ସରିଯିବ ଆଉ ତା'ପରେ ସେଇ ଛକ ପାଖରେ ଆମକୁ ଆମ

ରାସ୍ତା ବାଛିନବାକୁ ପଡ଼ିବ ଓ ମୁଁ ତମକୁ ହରେଇ ବସିବି । ତମେ ଯେପରି ମୋର କୃପଣ ହାତମୁଠା ଭିତରେ ଚିକ୍ ଚିକ୍ କରୁଥିବା ଖଣ୍ଡେ ହୀରା, ଭାଗ୍ୟର ଏକ ନିଷ୍ଠୁର ସ୍ୱାକ୍ଷର ଫଳରେ ମୁଁ ତୁମକୁ ହରେଇଦେଇଛି ଅନେକଦିନୁ । ଏକ ଅସ୍ତସୂର୍ଯ୍ୟର ବିକଳ ସାନ୍ନିଧ ପାଇଁ ମୁଁ ବିଳାପ କରି କରି ଏକ ତାରକିତ ନିଶୀଥର ସୌନ୍ଦର୍ଯ୍ୟ ଉପଭୋଗରୁ ମଧ ବଞ୍ଚିତ ହୋଇଛି । ମୁଁ ସେହି ମୂର୍ଖ, ଯେ ପରଲୋକର ଉପଭୋଗ ପାଇଁ ଇହକାଳ କଠୋର ତାପସ ବ୍ରତରେ ଅତିବାହିତ କରୁଛି ।

ଆଜିକାଲି କେବେ କେବେ ଆକାଶରେ ଜହ୍ନ ବୁଲୁଥିଲାବେଳେ ଯଦି ମୋ ଆଖିରେ ପଡ଼ିଯାଏ, ହଠାତ୍ ଚଳଚ୍ଚିତ୍ରର ଫ୍ଲାସ୍‌ବ୍ୟାକ୍ ପରି ମୋ ଆଖିରେ ସେଦିନର ଦିନଗୁଡାକ ଖୋଲିଯାଏ । ଇଚ୍ଛାହୁଏ, ତମ ପାଖକୁ ଯାଇ ତମ ପାଖରେ ଚୁପ ଚାପ୍ ବସିରହିବି, ତମର ସେଇ ଲମ୍ବା ଲମ୍ବା ଆଙ୍ଗୁଠିଗୁଡାକୁ ମୋର ହାତ ଭିତରେ ଚାପିଧରି । କହିବାର ତ କିଛି ନାହିଁ । ହଠାତ୍ ନିଦ ଭାଙ୍ଗିଗଲେ ଆକାଶରେ ଅସ୍ତାୟମାନ ନାଲି ଜହ୍ନ, ଏକ ବର୍ଷଣମୁଖର ସଂଧ୍ୟା, ନ ହେଲେ ବୈଶାଖର ନିର୍ଜନ ଶୂନ୍‌ଶାନ୍ ଖାଁ ଖାଁ ମୋର ଅସହ୍ୟ ହେଇଉଠେ ।

ସ୍ମୃତି ଏକ ମୃତ ବନ୍ଦର, ଯେଉଁଠାରେ କୌଣସି ଜାହାଜ ଲାଗିବାର ସାମାନ୍ୟତମ ସମ୍ଭାବନା ମଧ ନାହିଁ । ସ୍ମୃତି, ଅନାବନା ଜଙ୍ଗଲ ଭିତରେ ବୁଡ଼ିଯାଇଥିବା ଏକ ବିଧ୍ୱସ୍ତ ପ୍ରାସାଦ । ସ୍ମୃତି ଏକ ପରିତ୍ୟକ୍ତ ଜୀର୍ଣ୍ଣ ଦେବାଳୟର ସ୍ୱପ୍ନ । ସ୍ମୃତି ଏକ ବୁନିଆଦି ଘର ଭିତରେ ଜମିଯାଇଥିବା ଅନେକ ଅନାବନା ଆସବାବ୍‌ର ଜଞ୍ଜାଳ, ଯାହାକୁ ରଖି ହୁଏନାହିଁ ବା ଫିଙ୍ଗି ବି ହୁଏନା । ସ୍ମୃତି ମତେ ଯେପରି ଝୁଲେଇ ରଖିଚି, ସମସ୍ତ ଜୀବନକୁ ଏକ କଙ୍କାଳର ପଞ୍ଜରା ଭିତରୁ । ମଝିରେ ମଝିରେ ଏଇ ସ୍ମୃତିର ରୋମନ୍ଥନ, ଆନନ୍ଦ ଓ ବେଦନାର ଏକ ମିଶ୍ର ରାଗ; କିନ୍ତୁ ଏଇ ରୋମନ୍ଥନ ପାଇଁ ଯେଉଁ ଦ୍ୱିତୀୟ ପାକସ୍ଥଳୀ ତିଆରି କରିବାକୁ ପଡେ, ତାହା ଅତ୍ୟନ୍ତ ଯନ୍ତ୍ରଣାଦାୟକ । ମୁଁ ଯେପରି ସେଇ ଅଭିଶପ୍ତ ପ୍ରମିଥିଅସ୍, ଯିଏ କକେସସ୍‌ର ନିର୍ଜନ ଚୂଡ଼ା ଉପରେ ଆକାଶକୁ ମୁହଁକରି ଶୋଇରହିଚି, ଅନାଦି ଅନନ୍ତକାଳ ଏବଂ ପ୍ରତିଦିନ ସକାଳେ ଅଯୁତ ଈଗଲ ପକ୍ଷୀ ମୋର ପେଟ ଚିରି, ଯକୃତ୍ ଭକ୍ଷଣ କରୁଛନ୍ତି ଓ ସାରା ରାତି ପୁଣିଥରେ ମୋର ଯକୃତ୍ ତିଆରିହଉଚି ଓ ମୁଁ ଏକ ଗଭୀର ଆଶଙ୍କାରେ ତା'ପରଦିନ ପ୍ରତ୍ୟୁଷରେ ଈଗଲ ପକ୍ଷୀମାନଙ୍କର ଆଗମନକୁ ଅପେକ୍ଷା କରି ରହିଚି । ଏଇ ଯନ୍ତ୍ରଣାର ନାଟକ ନିତ୍ୟ ନୂତନ ହୋଇ ପ୍ରତ୍ୟହ ଅଭିନୀତ ହଉଚି ଲୋକଲୋଚନ ଅନ୍ତରାଳରେ ।

ତୁମର
ମୁଁ

# ଦ୍ୱାଦଶୀ

ପ୍ରିୟତମା ସୁଜାତା,

ଏଇ ନାଁଆରେ ତମକୁ ସମ୍ବୋଧନ କରିବା ମୋ'ର ଅନେକ ଆଗରୁ ଉଚିତ୍ ଥିଲା, କାରଣ ତମେ ଯଥାର୍ଥରେ ସୁଜାତା । ମୋ'ର ଜୀବନରେ ଏଇ ପ୍ରବଚନ ପ୍ରସିଦ୍ଧ ଗୁଣଟାର ଏକାନ୍ତ ଅଭାବ । ମୁଁ ପ୍ରିୟ କଥା କହିପାରେ ନାହିଁ ଯଦି ତାହା ଯଥାର୍ଥ ନ ହୋଇଥାଏ । ନଗ୍ନ ଭାଷାରେ କହିଲେ ମୁଁ ତୋଷାମଦ କରିପାରେ ନାହିଁ । ତମେ ମୋର ଜୀବନରେ ଏଇ ଅଭାବଟାକୁ ଯଥେଷ୍ଟ ପରିମାଣରେ କ୍ଷତିପୂରଣ କରିପାରିଥାନ୍ତ । ତମର ନିଶ୍ଚୟ ମନେଥିବ ତମେ ମତେ ଏକଦା କେତେ ପ୍ରିୟ କଥାସବୁ କହୁଥିଲ ଏବଂ ମୁଁ ମୂର୍ଖ ତମର ସବୁ କଥାରେ ବିଶ୍ୱାସ କରି ପ୍ରାୟ ଏକ ନିର୍ବୋଧ ଅମରାବତୀରେ ପହଞ୍ଚି ଯାଇଥିଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ଆଜି କହୁଚି ନିର୍ବୋଧ ଅମରାବତୀ ବୋଲି, କାରଣ ପିଲାଦିନର ସବୁକଥା ସମସ୍ତଙ୍କୁ ବୋଧହୁଏ ପିଲାଳିଆ ଓ ନିର୍ବୋଧ ଲାଗେ । ତମକୁ ମଧ ସେମିତି ଲାଗିଥିଲା । ତମର ଅନେକ ଚିଠିରେ ତମେ ବାରମ୍ବାର ଲେଖିଛ ଆମେ ଦୁହେଁ ସତରେ କେଡ଼େ ପିଲାଳିଆ ଥିଲେ ବୋଲି ! ଆମେ ସେ ବୟସରେ କଅଣ ହେଇ ଥାଆନ୍ତେ ବୋଲି ତମେ ଆଶା କରୁଥିଲ ? ତମେ କଅଣ ଆଶା କରୁଥିଲ ମୁଁ ହେଇଥାଆନ୍ତି ଜଣେ ଶୁକ୍ଳକେଶ ଇଞ୍ଜିନିଅର ଆଉ ତମେ ତମର ଫୁର୍ ଫୁର୍ ଧଳା ବାଳରେ ଗୋଟାଏ ସିଛି କାଟି ଜେଜେମା' ହେଇଥାଆନ୍ତ ?



ଆମେ ପିଲାଇ ଥିଲେ । ସେତେବେଳେ ଆମ ଆଖିରେ ଭାଦ୍ରବର ଖରା ବା ଅଳସରେ ଖରା ପୋଉଁଥିବା ପ୍ରଜାପତି ଆମର ଟେକ୍‌ସ୍‌ଟ୍ ବହି ଅପେକ୍ଷା ଅନେକ ଅନେକ ଗୁରୁତ୍ୱପୂର୍ଣ୍ଣ ଥିଲେ । ଥିବା ବୋଧହୁଏ ଉଚିତ୍ । ସେତେବେଳେ ଆମକୁ କଅଣ ପଢ଼ିବାକୁ ଦିଆଯାଉଥିଲା, ତାହା ତମର ସ୍ମରଣ ଥିବ । ଆଶାକରେ ତେଣୁ ତା'ର ପୁନରାବୃତ୍ତି ନକଲେ ଚଳିବ । କିଏ ପଢ଼େ ତାକୁ ? କିଏ ମାନେ ସେ' ଆଇନ କାନୁନ ?

ଯେଉଁ ଆଦର୍ଶସ୍ଥାନୀୟ ବ୍ୟକ୍ତିମାନେ ସେଦିନ ଆମକୁ କାନୁନ୍‌ର ନିଗଡ଼ ବନ୍ଧନରେ ବାନ୍ଧିବାକୁ ଚାହିଁଥିଲେ, ସେମାନଙ୍କୁ ମୁଁ ବିସ୍ମରଣ ହୋଇନାହିଁ । ସେମାନେ ସମସ୍ତେ ମୋଟା ହେଇ ଗଲେଣି, ଚନ୍ଦା ହେଇଗଲେଣି । କାହାର କାହାର ପେଟ ବାହାରି ପଡ଼ିଲାଣି ଏବଂ ପ୍ରାୟ ସମସ୍ତେ ବିପୁଳ ସଂପତ୍ତିର ଅଧିକାରୀ ଏବଂ ସେମାନେ କ୍ଷମତାରେ ଥିବା ଲୋକମାନଙ୍କର ଗୁଣ କୀର୍ତ୍ତନ କରିବାରେ ଚତୁର୍ମୁଖ । ହାୟ ସୁଜାତା ! ପୁଣି ଥରେ ସେମାନେ ଓ ତମେ ସମସ୍ତେ ମିଶି ପ୍ରମାଣ କଲ ଯେ ପ୍ରିୟକଥା କହିବା ଚାଲାଖ୍ ଲୋକଙ୍କର କାମ । ଆମ ଦେଶରେ ସମସ୍ତେ, ସେଇଥି ପାଇଁ ଜାଣିବାକୁ ଚାହାଁନ୍ତି ପିଲାଟି ଚାଲାଖ୍ ଚତୁର ହୋଇଚି କି ନାହିଁ । କାରଣ ତା'ରି ଉପରେ ତା'ର ଅବଶିଷ୍ଟ ଜୀବନ ନିର୍ଭର କରେ ବୋଲି ଆମେମାନେ ମନେକରୁ । ଚାଲାଖ ନ ହେଲେ, ହୁସିଆର ନ ହେଲେ ଠକିଯିବ । ଲୋକମାନେ (ଅର୍ଥାତ୍ ଅନ୍ୟ ଚାଲାଖ ଚତୁର ଲୋକମାନେ) ତମଠାରୁ ସବୁ କିଛି ମାରି ନେବେ ଓ ତମେ ବୋକା ପରି ଛଳକା ହେଇ ଠିଆ ହେଇଥିବ ।

ମୁଁ ନିଶ୍ଚିତ ଭାବରେ ଟିକିଏ ବୋକା । ଟିକିଏ କାହିଁକି, ବେଶ ବୋକା । କିନ୍ତୁ ମୁଁ ଆଦୌ ଛଳକା ହେଇଯାଇ ପାରିନାହିଁ । ଛଳକା ହେଇନାହିଁ ଏଇଥିପାଇଁ ଯେ ଠିକ୍ ଠିକ୍ ଦେଖିବାପାଇଁ, ବା କଥାଟାକୁ ବୁଝିବାପାଇଁ ଗୋଟାଏ ମୋଟା ଅଙ୍କର ବ୍ୟାଙ୍କ୍ ବାଲାନ୍‌ସର ପ୍ରୟୋଜନ ହୁଏ ନାହିଁ ବୋଲି । କିନ୍ତୁ ତା' ହେଲେ ବି ମୋ' ଠାରୁ କେହି କିଛି ମାରିନେଇ ପାରିନାହିଁ । ତା'ର କାରଣ ମୋ' ପାଖରେ ମାରି ନବା ପାଇଁ କିଛି ନାହିଁ । ତେଣୁ ମୁଁ ନିଜକୁ ଅପେକ୍ଷାକୃତ ନିରାପଦ ମନେକରେ ।

ମୋର ଏଇ ଅପେକ୍ଷାକୃତ ନିରାପତ୍ତା, ମୁ ସ୍ୱୀକାର କରୁଛି ମତେ କିଛି ପରିମାଣରେ ଅହଂକାରୀ କରିଛି । ମୁଁ କଥାଟାକୁ ସର୍ବହରା ବା ହ୍ୟାଭନଟ୍ ପରି କମ୍ୟୁନିଷ୍ଟିକ୍ ଜାର୍ଗନ୍ ଆଡକୁ ଆଦୌ ଟାଣିବାକୁ ଚେଷ୍ଟା କରୁନାହିଁ । ତଥାପି ଏହା ସତ୍ୟ ଯେ ଯାହାର ହରେଇବାର କିଛି ଭୟ ନଥାଏ ତା'ର ଭୟ କରିବାର ମଧ୍ୟ କିଛି ନଥାଏ । କିନ୍ତୁ ଲୋକମାନେ ଅର୍ଥାତ୍ ମୋ'ର ସମସାମୟିକ ବଂଧୁମାନେ ଏବେ ବି ମତେ ସହାନୁଭୂତି ଦେଖାଇ କୁହନ୍ତି ମୁଁ କିଛି କରିପାରିଲି ନାହିଁ ବା ହେଇପାରିଲି ନାହିଁ ବୋଲି । ମୁଁ ଯେତେବେଳେ ବୁଝି ନପାରିଲା ପରି ସେମାନଙ୍କ ଆଡକୁ ଅନାଏ, ସେମାନେ କୁହନ୍ତି, 'ମାନେ, — ଉଇ ମିନ୍, ଢୁ କିଛି ଗୋଟାଏ ଆଚିଭ୍ (achieve) କରି ପାରିଲୁ ନାହିଁ ।' ଘରକୁ ଆସି ଏଇ ଇଂରାଜୀ ଶବ୍ଦଟିର ଅର୍ଥପାଇଁ ଅନେକ ଦିନପରେ ଆଉଥରେ ଡ଼ିକ୍‌ସ୍‌ନାରୀ ଖୋଲିଛି ଏବଂ ଅର୍ଥ ଯାହା ଦେଖିଛି ସେଥିରେ ମୋ' ଠାରୁ କାହିଁକି କି ପ୍ରକାରର ଆଚିଭ୍‌ମେଣ୍ଟ ଆଶା କରାଯାଉଥିଲା ମୁଁ ବୁଝିପାରେ ନାହିଁ ।

ମୁଁ ତ ବିଶ୍ୱ ଅଲିମ୍ପିକ୍ କ୍ରୀଡ଼ାରେ ଭାରତବର୍ଷର ପ୍ରତିନିଧିତ୍ୱ କରି ନଥିଲି । ମୁଁ ତ ଲାବରେଟୋରୀ ଭିତରେ ଆବଦ୍ଧ ରହି ବାହାରିଲା ବେଳକୁ ପୃଥିବୀକୁ କ୍ୟାନ୍‌ସର୍‌ର ଗୂଢ଼ତତ୍ତ୍ୱର ସଂଧାନ ଦେବି ଏପରି ପ୍ରତିଶ୍ରୁତି ଦେଇ ନ ଥିଲି ବା ମୁଁ ସାହିତ୍ୟରେ ନୋବେଲ୍ ପ୍ରାଇଜ୍ ପାଇବି ଏପରି କୌଣସି ଲକ୍ଷଣ କେବେ ପ୍ରକାଶ କରି ନଥିଲି । ତାହାହେଲେ ମୋ' ଠାରୁ ସେମାନେ କି ଆଚିଭ୍‌ମେଣ୍ଟ୍ ଆଶା କରୁଥିଲେ ?

ପରେ ଖବର ନେଇ ପରସ୍ପରରେ ବୁଝିବାକୁ ପାଇଥିଲି ଯେ ସେମାନଙ୍କ ମତରେ ଆଚିଭ୍‌ମେଣ୍ଟ୍ ହଉଛି ଗୋଟାଏ ପ୍ରକାରର କରିତ୍-କର୍ମା ପ୍ରତିଭା । ଛକ ଜାଗା ଦେଖି ଘର ପରି ଘର କରିବା; ପ୍ରଚୁର ପଇସା କରିବା ବା କ୍ରମାଗତ ଭାବରେ ତିନି ତିନିଟା ନିର୍ବାଚନରେ (ଯା'ଭିତରେ ପଦୁ ପଛକେ ପାଞ୍ଚଥର ଦଳ ବଦଳ କରିବାକୁ) କ୍ରମାଗତ ଭାବରେ ମନ୍ତ୍ରୀପଦ କାଏମ୍ ରଖିବା ।

ମୁଁ ସେ ଅର୍ଥରେ ଆଚିଭ୍‌ମେଣ୍ଟ୍ କଥାଟା ବୁଝିନାହିଁ ବୋଲି ସେଇ ଅର୍ଥରେ ଆଚିଭ୍ କରିଥିବା ଲୋକମାନଙ୍କ ସହିତ ମୋର ଆଜିକାଲି ବିଶେଷ କିଛି ସଂପର୍କ ନଥାଏ ଓ ତେଣୁ ମୁଁ ସେହି ସେହି ବିଶେଷ ବିଶେଷ ପ୍ରତିଭାର ଅଧିକାରୀ ନଥିବାରୁ ଏକ ସାଧାରଣ ମନୁଷ୍ୟର ଜୀବନ ଯାପନ କରେ । ଏକ ସାଧାରଣ ମନୁଷ୍ୟ ଯାହାର କିଛି ସୁଖ ଦୁଃଖ ଅଛି, କିଛି ଅଭାବ ଅଛି ଓ ତା'ରି ପରି ଅନ୍ୟ ଅନେକ ମଣିଷମାନଙ୍କ ପ୍ରତି ମଧ କିଛି ବେଦନାବୋଧ ରହିଛି ।

ଯେହେତୁ ମୋର କିଛି ଆଚିଭ୍ କରିବାର ନାହିଁ ବା ଆଚିଭ୍ କରିବାର ନଥିଲା ତେଣୁ ମୋ' ହାତରେ ଅନେକ ସମୟ ବଳେ । କିଛି ରୋଜଗାର କରି ଚଳିଯିବା ପାଇଁ କେତେ ବା ସମୟ ଲାଗେ ? ଟିକିଏ ବେଶି ଟଙ୍କା ହେଲେ ଆରମ୍ଭ ହୁଏ ଝିନ୍ ଝଟ୍ । ତାକୁ ଆହୁରି ବେଶିକରି କିଛି ଗୋଟାଏ ଲାଭ ହଉଥିବା ଜାଗାରେ ତା'କୁ ଖଟାଅ ଏବଂ ତମର ପରିଶ୍ରମ ଲବ୍‌ଧ ଧନ ଯେ ବୁଡ଼ି ନଯିବ ସେଥିପାଇଁ ସେ ବ୍ୟବସାୟକୁ ବିନିଦ୍ର ରଜନୀ ଯାପନ କରି ଜଗିବସ । ତା' ପରେ ସେଥିରେ ଯଦି ତମେ ଲାଭବାନ୍ ହେଲ ତାହେଲେ ଇନ୍‌କମ୍ ଟିକସ୍‌କୁ ଫାଙ୍କିଦବା ପାଇଁ ଓକିଲ ଘରକୁ ଯାଅ ଓ ସେଠି ମୁଁ ଶୁଣିଚି କଅଣ ସବୁ ଅନେକ ପ୍ରକାରର ଦଲିଲ୍ ଫଲିଲ୍ ତିଆରି କରି ପଛୁଆ ତାରିଖ ଦେଇ କେମିତି କଅଣ ସବୁ ଠିକ୍ ଠାକ୍ କରିଦିଆ ଯାଏ । ଓଃ ରକ୍ଷା, ରହିଗଲା ସଂପରି ଯାହାହଉ ।

ମୁଁ ଦାରିଦ୍ର୍ୟର ପକ୍ଷ ସମର୍ଥନ କରୁନାହିଁ । ମୁଁ ମଧ ଦାରିଦ୍ର୍ୟକୁ ଏକ କୁଷ୍ଠ ବ୍ୟାଧିପରି ଘୃଣା କରେ । କିନ୍ତୁ ଗୋଟାଏ ଦରିଦ୍ର କଥା ଚିନ୍ତା କରାଯାଉ । ତା'ର ବୋଧହୁଏ — ତାର କାହିଁକି, ତା'ର ପରିବାରର ସମସ୍ତଙ୍କର ଅହର୍ନିଶ ଅର୍ଥଚିନ୍ତା ।

ଏବଂ ଗୋଟିଏ ଧନୀ ଲୋକ କଥା ଚିନ୍ତା କରାଯାଉ । ସେ' ଓ ତା'ର ପରିବାରର ମଧ୍ୟ ସମସ୍ତଙ୍କର ସେଇ ଅର୍ଥ ଚିନ୍ତା । ପ୍ରଭେଦ କେବଳ ଯେ ଦରିଦ୍ରର ଚିନ୍ତା କାଲିର ଖାଦ୍ୟ ଯୋଗାଡ଼ କରିବା ପାଇଁ, ଧନୀର ଚିନ୍ତା କାଲିର ମୁନାଫା କରିବା ପାଇଁ । ତାହାହେଲେ ଅସଲ କଥାଟା ହେଲା ଦୁହେଁ ଗୋଟାଏ ଗୋଦର ଗୋଡ଼ିଆ କୁତ୍ସିତ - ଦର୍ଶନ କୁବେରର ପାଦତଳେ ଆତ୍ମ ସମର୍ପଣ କରିଥାଆନ୍ତି । ଜଣେ ଅନିଚ୍ଛା ସତ୍ତ୍ୱେ, ଅନ୍ୟଜଣେ ଇଚ୍ଛା କରି ।

କିଏ ଜଣେ ଦାର୍ଶନିକ ଥରେ କହିଥିଲେ — ନାଁ ମନେ ପଡୁନାହିଁ । ସେ କହିଥିଲେ ଜଣେ ରାଜା ଥିଲେ ଯିଏ ରାତିସାରା ବିଳାସ ବ୍ୟସନରେ ମତ୍ତ ରହି ଦିନରେ ଶୋଇଯାଉଥିଲେ ଓ ସ୍ୱପ୍ନ ଦେଖୁଥିଲେ ଯେ ସେ ଜଣେ କାଙ୍ଗାଳ ଓ ଭିକ୍ଷାପାତ୍ର ଧରି ଦୁଆରକୁ ଦୁଆର ବୁଲି ଭିକ୍ଷା ମାଗୁଛନ୍ତି । ଅଥଚ ଜଣେ ଭିକାରୀ ଥିଲା, ଯେ ମାଗିଯାଚି ବେଳ ଥାଉ ଥାଉ ଖାଇଦେଇ ଶୋଇପଡ଼େ ଓ ସ୍ୱପ୍ନ ଦେଖେ ଯେ ସେ ଜଣେ ରାଜାଧିରାଜ ଓ ସାରା ରାତି ନାନା ବିଳାସ ବ୍ୟସନରେ ତା'ର ସମୟ ଅତିବାହିତ କରୁଛି । ଶେଷ କଥା ବା ଅସଲ କଥା ହେଲା ଜଣେ ବ୍ୟକ୍ତି ରାତିରେ ରାଜା ଓ ଦିନରେ ଭିକାରୀ ଓ ଆଉଜଣେ ବ୍ୟକ୍ତି ଦିନରେ ଭିକାରୀ ଓ ରାତିରେ ରାଜାଧିରାଜ ।

କିଏ ଏକଥା ବାଜିମାରି କହିପାରିବ ଯେ ଜଣେ ଲୋକ ଦିନରେ ଯାହା ହୁଏ ତାହାହିଁ କେବଳ ସତ୍ୟ ଓ ରାତିରେ ଯାହା ଅନୁଭବ କରେ ତାହା ସବୁ ସ୍ୱପ୍ନ, ଅଳୀକ ବା ମିଥ୍ୟା ! କାରଣ ଏଇ ଦିନର ସ୍ୱରୂପଟାହିଁ ତ କେବଳ ଗୋଟାଏ ଅନୁଭବ । ତାହା ହେଲେ ରାତ୍ରିର ଅନୁଭବଟା ଏତେ ମିଥ୍ୟା ହବାକୁ ଯିବ କାହିଁକି ?

ଏ ଭଦ୍ରଲୋକ ଦାର୍ଶନିକ କଥାଟା ମୋ' ମନକୁ ଭାରି ପାଇଛି କାରଣ ଅଧୁନା ଏ ପ୍ରକାରର ଦର୍ଶନ ମୋ' ପାଇଁ ଏକାନ୍ତ ପ୍ରୟୋଜନୀୟ ବସ୍ତୁ ହେଇ ପଡ଼ିଛି ।

ତମେ କେଜାଣି ଜାଣିଥିବ ଯେ ମୋର ଜୀବନର ଆକାଂକ୍ଷା ଥିଲା ଗୋଟାଏ ଭାଗାବଣ୍ଡର ଜୀବନ ଯାପନ କରିବା । ଭାଗାବଣ୍ଡ୍ ଅର୍ଥ ଏକ ବେପରୁଆ ଓ ଖିଆଲୀ ଜୀବନ ଯାପନ କରିବା । ତା'ର ଅର୍ଥ ଯେତେବେଳେ ଯାହା ଇଛା ତାହା ଯେତେ ଦୂର ସମ୍ଭବ କରିପାରିବା ଓ ଯଦି କରିବା ସମ୍ଭବ ନୁହେଁ ତାହା ହେଲେ ତା' ପାଇଁ ଗଭୀର ଦୁଃଖ ପ୍ରକାଶ କରିବା । ସାମାଜିକ ଉଚିତ୍ ଅନୁଚିତର ମାପକାଠିରେ ମୁଁ କୌଣସି ଦିନ ଜୀବନକୁ କଫି ଚାମୁଚରେ ଚାମୁଚ୍ ଚାମୁଚ୍ କରି ମାପିନଥିଲି । ଆଜି ମଧ୍ୟ ନୁହେଁ । କିନ୍ତୁ ତା' ବୋଲି ମୁଁ ଯେ ଅର୍ଥହୀନ ବା ସମ୍ବଳହୀନ ବା'ସେଇ କିମ୍ବଦନ୍ତୀର ଗ୍ରାସ୍‌ହପର୍ ପରି ମୁଁ ଯେ କିଛି ସଂଚୟ କରିନାହିଁ, ଏକଥା ଭାବିବା ଠିକ୍ ହବନାହିଁ । କାରଣ ଏକ ଅର୍ଥହୀନ ବ୍ୟକ୍ତିର ଭାଗାବଣ୍ଡ୍ ଜୀବନ ଯାପନ ସଂପୂର୍ଣ୍ଣ ଭାବରେ ବ୍ୟାହତ

ହୁଏ । ଦିନେ ନାଁ ଦିନେ ପୁଣି ଫେରିଯିବାକୁ ପଡ଼େ ଧନୀ ଲୋକମାନଙ୍କ ପାଖରେ କୁର୍ଣ୍ଣିସ୍ କରିବା ପାଇଁ । ଆଃ ! ଏଇ କଥାଟା କଲାବେଳେ ଭାରି ବାଧେ । ଯେତେବେଳେ ଅନ୍ୟ କେହି ତୋଷାମଦ କରିବା ବା ଆଣ୍ଠୁଭାଙ୍ଗି ଯୋଡ଼ ହସ୍ତରେ ଠିଆ ହେବାର ମୁଁ ଦେଖେ (ତମେତ ଅନେକ ଦେଖିଥିବ) ମୋର ମନେହୁଏ ଏହା ମନୁଷ୍ୟତା ପ୍ରତି ଓ ଏ ଯାବତ୍ ପ୍ରତିଷ୍ଠିତ ହେଇଥିବା ମାନବିକ ମୂଲ୍ୟବୋଧ ପ୍ରତି ଏକ ଚରମ ଅପମାନ । ଗୋଟାଏ ବୁଲା କୁକୁର, ଗୋଟାଏ ଘୁଷୁରୁଥିବା କୁଷ୍ଠରୋଗୀ, ଏତେ ଗୁଡ଼ାଏ ଆଙ୍ଗ ବିକଳାଙ୍ଗ ଅନ୍ଧ, ମୂକ, ବଧିର ସେମାନଙ୍କର ଖାଇବା ଯୋଗାଡ଼ କରିପାରନ୍ତି । ଅଥଚ ଏତେ ସମର୍ଥ ଏତେ ସୁସ୍ଥ ଓ ଏତେ ଯୋଗ୍ୟ ଲୋକମାନଙ୍କର କାହିଁକି ଆଣ୍ଠୁଭାଙ୍ଗି ଠିଆ ହବାର ବା କାହିଁକି ଭାଟମାନଙ୍କ ପରି ପ୍ରଶସ୍ତି ଗାନ କରିବାର ପ୍ରୟୋଜନ ପଡେ ମୁଁ ବୁଝିପାରେ ନାହିଁ । କେବଳ ଏତିକି କହିବି ସେମାନେ ଇତିହାସରୁ କୌଣସି ଶିକ୍ଷା ଗ୍ରହଣ କରିନାହାନ୍ତି । ଏମାନେ ସାମୟିକ ସୁବିଧା ସୁଯୋଗ ପାଇଥାନ୍ତି ସତ, କିନ୍ତୁ ଇତିହାସର ଯଶଗ୍ରନ୍ଥିରେ ଜଣେ ହେଲେ ତୋଷାମଦକାରୀର ନାମ କୁତ୍ରାପି ଏ ଯାବତ୍ ଉଲ୍ଲେଖ ହେଇନାହିଁ । (ଋଷି ଜାବାଳୀ ବୋଧହୁଏ ଏହାର ଏକମାତ୍ର ବ୍ୟତିକ୍ରମ) ।

ତାହା ହେଲେ ଏଇ ସାମୟିକ ବଞ୍ଚିବାଟା କଅଣ ସବୁ ? କୌଣସିମତେ କିଛି ଘର ଦ୍ୱାର, କିଛି ଅର୍ଥ ସଞ୍ଚୟ କରିଯିବାଟା କଅଣ ସବୁ ? ଏବଂ ଏଇଥା କରି ଜଣେ ମଣିଷ ତା'ର ମାତ୍ର ଷାଠିଏ ବର୍ଷର ଜୀବନର ଲିଜ୍ (ଗିଭ ଆଣ୍ଡ ଟେକ୍ ଟେନ୍ ଇଅର୍ସ) ଅପବ୍ୟୟ କରିଦବାକୁ ପ୍ରସ୍ତୁତ ! କିନ୍ତୁ ମୋର ପୁଣି ବେଳେ ବେଳେ ମନେହୁଏ ଏଲୋକମାନଙ୍କର ହୁଏତ କିଛି ଦୋଷ ନାହିଁ । ପ୍ରଶସ୍ତି ଗାନ କରିବା ଏମାନଙ୍କର ଅଭ୍ୟାସଗତ ହୋଇଗଲାଣି । ସେମାନଙ୍କର ଏ ଅଭ୍ୟାସରୁ ମୁକ୍ତି ନାହିଁ । ମୁଁ ତ କରେ ନାହିଁ, ଶୁଣିଛି ଏଇମାନେହିଁ କଅଣ ସବୁ ଆମ୍ଭା ଫାମ୍ଭାରେ ବିଶ୍ୱାସ କରନ୍ତି ଓ ପୁଣି ବିଶ୍ୱାସ କରନ୍ତି ଯେ ସେମାନେ ମୃତ୍ୟୁ ପରେ ମଧ ଠିକ୍ ପୃଥିବୀକୁ ନ ହେଲେ ମଧ ପୃଥିବୀର ପାଖାପାଖି ଜାଗାରେ ରହି (ଲୁଚିବା ପ୍ରୟୋଜନ ହୁଏନାହିଁ ଯେହେତୁ ସେମାନେ ଅଶରିରୀ) ପୃଥିବୀରେ, ବିଶେଷ କରି ସେମାନଙ୍କର ସହରରେ ବା ସାହିରେ ବା ସେମାନଙ୍କର ବଂଶଧରମାନଙ୍କ ସହିତ ଶତ୍ରୁତା କରୁଥିବା ଲୋକମାନଙ୍କର ଗତିବିଧି ଲକ୍ଷ୍ୟ କରିପାରିବେ । କଅଣ ଦେଖିବେ ସେମାନେ ? ସେମାନେ ନିଶ୍ଚୟ ଦେଖିବେ ସେମାନଙ୍କର ପ୍ରିୟ ବଂଶଧରମାନେ ଅଫିମ ବା ଡ୍ରଗ୍ ଖାଇ ପ୍ରାୟ ଅଚେତ୍ ଅବସ୍ଥାରେ କମ୍ୟୁନିଟି ସେକ୍ସ୍ ନାମକ ଏକ ଅତ୍ୟନ୍ତ ଆଲ୍‌ଟ୍ରାମଡ଼ର୍ଣ୍ଣ ବିଳାସରେ ବ୍ୟସ୍ତ ଅଛନ୍ତି । ଏମିତି ଅନେକ କିଛି ଦେଖିପାରନ୍ତି, ତା'ର ଏକ ବିସ୍ତୃତ ତାଲିକା ଦବା ଏଇ ସଂକ୍ଷିପ୍ତ ପରିସର ମଧରେ ସମ୍ଭବ ନୁହଁ । ଏହାର ସରଳ କାରଣ ତମେତ, ସେମାନେ

ଓ ସେମାନଙ୍କର ଉତ୍ତରାଧିକାରୀଙ୍କ ପାଇଁ ଯଥେଷ୍ଟ କିଛି ସଞ୍ଚିତ ରଖିଯାଇଛ । ସେମାନେ ଆଉ କରିବେ କଅଣ ?

କାହିଁକି ତାହେଲେ ଲୋକେ ବୁଢିଆଣି ପରି ଅହର୍ନିଶି ଏଇ ଅର୍ଥର ଜାଲ ବିସ୍ତାର କରୁଥାନ୍ତି ? ଅର୍ଥ, ଅର୍ଥରୁ କ୍ଷମତା ଓ କ୍ଷମତା ପ୍ରୟୋଗ କରି ଆହୁରି ଅର୍ଥ ଓ ପୁଣି ଆହୁରି କ୍ଷମତା ଇତ୍ୟାଦି ଇତ୍ୟାଦି । ଏ ପଙ୍କିଳ ବୃତ୍ତର କଅଣ ଶେଷ ଅଛି ? ତମେ ଯଦି ଏକା ସାଙ୍ଗରେ ନେପୋଲିଅନ୍, ହିଟ୍‌ଲରଙ୍କ ଅଖଣ୍ଡ କ୍ଷମତା ଓ ଓନାସିସ୍ ଓ ରଥ୍‌ଚାଇଲ୍‌ଡ୍‌ଙ୍କର ଅର୍ଥ ଆଶା କର, ତାହେଲେ ଅଲଗା କଥା !

ତମେ ବୋଧହୁଏ ମନେ ମନେ ହସୁଥିବ ଓ ଭାବୁଥିବ ଏ ଭଦ୍ରଲୋକ ଅର୍ଥ - କ୍ଷମତାର ନାଗର ଦୋଳାରେ କେବେ ଝୁଲିନାହାନ୍ତି ଯେଉଁଠି କ୍ରମପର୍ଯ୍ୟାୟରେ ମଣିଷର ପାଦପାଖେ ଅର୍ଥ ଓ କ୍ଷମତା ସଲାମ୍ କରିଯାଆନ୍ତି । ତା' ଠିକ୍ । ମୁଁ ସେ ନାଗର ଦୋଳାରେ କେବେ ଝୁଲିନାହିଁ । କିନ୍ତୁ ଅନ୍ୟମାନଙ୍କୁ ତ ସେ' ନାଗର-ଦୋଳାରେ ଝୁଲିବାର ଦେଖିଛି ।

ଏଠି ଟାଟା, ଡାଲମିଆଁ, ବିରଳାଙ୍କୁ କିଛି କିଛି ଦେଖିଛି ଏବଂ ମୋନାକ୍‌କୋ ଉପକୂଳରେ ଆରିଷ୍ଟୋଟ୍‌ଲ ଓନାସିସ୍ ଓ ବାରିପଟ କୂଅରୁ ପେଟ୍ରୋଲ୍ ବାହାରୁଥିବା ଅର୍ଥ କୁବେର ଶେଖ୍‌ମାନଙ୍କ ବିଷୟରେ ଅନେକ ପଢ଼ିଛି । ସଂକ୍ଷିପ୍ତରେ କହିଲେ ସେମାନଙ୍କ ପାଖରେ ଅର୍ଥ ତା'ର ମୂଲ୍ୟ ହଜେଇ ବସିଛି ଓ ସେମାନେ ଏଇ ଅର୍ଥ କରିବା କ୍ରମରେ ସେମାନଙ୍କର ଜୀବନକୁ ମଧ ହଜେଇ ବସିଛନ୍ତି । ଦ୍ରାକ୍ଷାଗୁଚ୍ଛକୁ ସମଗ୍ର ମରୁଭୂମି ଅତିକ୍ରମ କରିନବାର ଲୋଭରେ ତାଙ୍କର ଆଙ୍ଗୁଠି ଫାଙ୍କ ଦେଇ ଦ୍ରାକ୍ଷା-ରସ ସବୁ ବହିଯାଇ ନିଃଶେଷ ହେଇଯାଇଛି ଏବଂ ମରୁଭୂମିର ଅପରପ୍ରାନ୍ତରେ ପହଞ୍ଚି ସେମାନେ ଅନୁତାପ କରିଛନ୍ତି, ବୋଧହୁଏ ଏ କୃଚ୍ଛ୍ର ସାଧନ ନ କରିଥିଲେ ଚଳିଆଆନ୍ତା ! The game was not worth the candle. ଓନାସିସଙ୍କ ସ୍ତ୍ରୀ ତାଙ୍କୁ ଏକ ପରିଣତ ବୟସରେ ଡାଇଭୋର୍ସ କରି ତାଙ୍କର ସମସ୍ତ ଅର୍ଥ, ରିଭେଇରା ଉପକୂଳରେ ଭୂମଧ ସାଗର ନୀଳିମାରେ ଭାସମାନ ତାଙ୍କର ବିଳାସ ତରଣୀ ସବୁ କିଛିକୁ ପାଦରେ ଆଡେଇ ଦେଇ ଚାଲିଗଲେ ଓ ଆବୁଢ଼ାବିର ରାଜା କୌଣସି ଶେଖ୍‌ଙ୍କର ହ୍ୟାରେମ୍ ଯେତେବେଳେ ଖୋଲିଦିଆଗଲା, ସେମାନେ ଆସି ଗୋଟାଏ ଜାହାଜରେ ବିଦେଶାଗତ କ୍ୟାପ୍‌ଟେନ୍ ଠାରୁ ଆରମ୍ଭକରି ସମସ୍ତ ଉପସ୍ଥିତ କ୍ରୁମାନଙ୍କୁ ପ୍ରେମ କରିବାକୁ ଆରମ୍ଭ କଲେ, ଅଥଚ ଶେଖ୍‌ମାନଙ୍କର ପ୍ରଚୁର ଅର୍ଥ ଓ ସେମାନେ ସମସ୍ତେ ତାଙ୍କର ନୀତି ମଧ ଠିକ୍ ରଖିଛନ୍ତି — ଅନ୍ତତଃ ଆମେ ନୀତି କହିଲେ ଯାହା ବୁଝୁ — ଅର୍ଥାତ୍ ତାଙ୍କର କୋରାନ୍ ଅନୁସାରେ ତାଙ୍କ ଦେଶରେ ମଦ ପିଇବା ସଂପୂର୍ଣ୍ଣ ନିଷିଦ୍ଧ, ତେଣୁ ସେମାନେ ପ୍ରତି ଆଫ୍‌ଟରନୁନ୍‌ରେ ଏକ

ଭାରତୀୟ ସହର ବମ୍ବେକୁ ଉଡ଼ିଆସି ଆକଣ୍ଠ ମଦ୍ୟପାନ କରି ପୁଣି ଥରେ ଫେରିଯାଆନ୍ତି ତାଙ୍କ ଦେଶକୁ ଏକ ଆଇନ୍ ଓ କୋରାନ୍ ସମ୍ମତ ନୈତିକ ଜୀବନ ଯାପନ କରିବାକୁ । ଦୁବାଇଠାରୁ ବମ୍ବେ କେତେ ବା' ସମୟ, ମାତ୍ର ଦେଢଘଣ୍ଟାର ବାଟ ।

ମୁଁ ତୁମକୁ କହିବାକୁ ଚାହୁଁଥିଲି ଅନ୍ୟ କଥା, କିନ୍ତୁ କଥାରେ କଥାରେ ଆସି ପହଞ୍ଚିଲିଣି ଆରବଦେଶର ତେଲିମାନଙ୍କ ପାଖରେ । ହଁ, ତେଲି ତ ! ଗାଁଆରେ ଶୁଣିନାହଁ ତେଲିମହାଜନମାନଙ୍କ କଥା । ଏମାନଙ୍କର ଠିକ୍ ସେଇ ଅବସ୍ଥା । ତେଲ ପାଇଁ ସେମାନଙ୍କ ପାଖରେ ପ୍ରାୟ ସବୁ ଦେଶ କୁର୍ଣ୍ଣିସ କରୁଛି ଏପରିକି ଯୁକ୍ତରାଷ୍ଟ୍ର ଆମେରିକା ପର୍ଯ୍ୟନ୍ତ । କିନ୍ତୁ ସେମାନେ ବୁଝିପାରୁନାହାନ୍ତି ଯେ ସେମାନଙ୍କର ତେଲର କୂଅ ଅତି ଦ୍ରୁତଗତିରେ ଶୁଖି ଶୁଖି ଆସୁଛି ଏବଂ ତା' ପରେ ବୁଡ଼ିଗଲା ଜାହାଜର ମୂଷାମାନଙ୍କ ପରି ସେମାନଙ୍କର ସଯତ୍ନ ରକ୍ଷିତ ସମସ୍ତ ହ୍ୟାରେମ୍‌ର ରକ୍ଷିତାମାନେ ପଳାୟନ କରିବେ ଏବଂ ତାଙ୍କର ଆଖି ଆଗରେ କେବଳ ଥିବ ଗୋଟାଏ ଧୂ ଧୂ ମରୁଭୂମି ।

ତେଣୁ ମୁଁ ଅନେକ ଦିନୁ ଠିକଣା କରି ନେଇଛି, ଏ ମୂଷା ଦୌଡ଼ରେ ଯୋଗ ଦେବିନାହିଁ ଏବଂ ବିଶ୍ୱାସ କର ସେଥିପାଇଁ ମୁଁ ବିଶେଷ ସ୍ୱଚ୍ଛଳ ଅବସ୍ଥାରେ ନଥାଇ ପାରେ, ବେଶ ଆନନ୍ଦରେ ଅଛି । ଠିକ୍ ଦିନ ସାଢ଼େ ଗୋଟାଏ ବେଳେ ଯେତେବେଳେ ତମେମାନେ ତମ ଫ୍ୟାକ୍ଟରୀରୁ ଫେରୁଥାଅ ବା ଯେତେବେଳେ ସ୍କୁଲ, କଲେଜ୍ ଆସେମ୍ବ୍ଲି ଓ ବିଚାରାଳୟ ସବୁ କିଛି ମଧ୍ୟାହ୍ନଭୋଜନ ପାଇଁ ଛୁଟିହୁଏ, ବିଶ୍ରାମ ନେଇ ପୁଣି ଥରେ ଆଫ୍‌ଟର୍‌ନୁନ୍ ସେସନ୍‌ପାଇଁ ପ୍ରସ୍ତୁତ ହେବାକୁ ମୁଁ ଠିକ୍ ସେତିକିବେଳେ ଘରକୁ ଫେରିଆସେ । ପୌଷର ଖରାରେ ବସି ଗୋଟାଏ ଚିଲ୍‌ଡ଼ ବିଅର୍ ମଗ୍ ହାତରେ ଧରି ମୁଁ କେବଳ ବସି ବସି ସ୍ୱପ୍ନ ଦେଖେ । ସ୍ୱପ୍ନଟା ବାସ୍ତବ ଜୀବନରେ କୌଣସି ଅଭାବର କ୍ଷତିପୂରଣ କରିବା ପାଇଁ ନୁହେଁ, ସ୍ୱପ୍ନ କେବଳ ସ୍ୱପ୍ନ ଦେଖିବା ପାଇଁ ।

ସ୍ୱପ୍ନଟା ସେଇଠାରେ ଆକାଶ କୁସୁମ ତୋଳିବା ବା' ପବନ ଉପରେ ଦ୍ୱିତଳ ପ୍ରାସାଦ ତିଆରି କରିବାଠାରୁ ଭିନ୍ନ । ଆକାଶ କୁସୁମ ଚୟନ ବା ଶୂନ୍ୟରେ ପ୍ରାସାଦ ଗଢିବା ଏକ ବାସ୍ତବ ଜୀବନରେ ଅଭାବର ଏକ ରୁଗ୍‌ଣ, ଦୟନୀୟ କ୍ଷତିପୂରଣର ବିଫଳ ପ୍ରଚେଷ୍ଟା; କିନ୍ତୁ ସ୍ୱପ୍ନ ପାଇଁ ସ୍ୱପ୍ନ ଦେଖିବା ଏକ ସୁସ୍ଥ ତରୁଣ ମନର ବିଳାସ । ପୁଣି ରାତିର ସ୍ୱପ୍ନ ଓ ଦିବାସ୍ୱପ୍ନ ଏକା ନୁହଁ । ରାତିରେ ଶୋଇଥିବା ସମୟର ସ୍ୱପ୍ନ ଉପରେ ତମର ଅକ୍ତିଆର ନାହିଁ । କିନ୍ତୁ ଦିବା ସ୍ୱପ୍ନକୁ ବେଶ୍ ସୁନ୍ଦର ଭାବରେ ନିୟନ୍ତ୍ରିତ କରିହୁଏ, ସେଇଥିପାଇଁ ତମେ ଠିକ୍ ଠିକ୍ ଖେଳ୍‌ଓ୍ୱାଡ଼୍ ହବା ଦରକାର ନ ହେଲେ ମଝିରେ ମଝିରେ ବୁଡ଼ିଆଣି ଜାଲପରି ତମର ସ୍ୱପ୍ନର ଖିଅ ଛିଣ୍ଡିଯାଇପାରେ । ତାହାହେଲେ ଗଲା, ମାଟି ହୋଇଗଲା ସବୁ, ଯେମିତି ସମୁଦ୍ର ବାଲି ଉପରେ ବିଲୁଆ ଗାଡ଼ ନହେଲେ ତା'ସ୍‌ର ଘର ଭାଙ୍ଗିପଡେ ଥରକୁ

ଥର । ଆଉ ଥରେ ମୂଳରୁ ଚେଷ୍ଟା କରିପାର କିନ୍ତୁ ପୂର୍ବଥର ପରି ଯେ ଏଥରକ ତମର ଖେଳ ଠିକ୍ ଠିକ୍ ଜମିବ, ଏ ଗ୍ୟାରେଣ୍ଟି କେହି ଦେଇପାରିବେ ନାହିଁ।

ଆଜି ନୁହେଁ, ଏଇପରି ଦିବାସ୍ୱପ୍ନ ଦେଖିବା ମୋ'ର ପିଲାଦିନର ଅଭ୍ୟାସ । ପିଲାଦିନେ ମୋ'ର ଗୋଟାଏ ହବି ଥିଲା ଖରାରେ ବୁଲି ବୁଲି ପ୍ରଜାପତିମାନଙ୍କର ଉଡି ବୁଲିବା ଲକ୍ଷ୍ୟ କରିବା । ମୋ' ଜୀବନରେ ମୁଁ ଅସଂଖ୍ୟ ପ୍ରଜାପତି ଦେଖିଥିବି । କାରଣ ଏଇ ପ୍ରଜାପତି ଦେଖିବା ଥିଲା ମୋର ମୁଖ୍ୟ କାମ, ପ୍ରାୟ ବୃତ୍ତି କହିଲେ ଚଳେ । ଏତେ ବଡ ବଡ ପ୍ରଜାପତି ପୁଣି ଏତେ ସାନ ସାନ, କୁନି କୁନି । କେତେବେଳେ କେମିତି ବଗିଚାର ଖଣ୍ଡେ ପଥର ଉପରେ ବସି ରହି ମୁଁ ଅନ୍ୟମନସ୍କ ହୋଇପଡେ । ବସି ବସି ଭାବେ ସକାଳେ ଆଲୁଅରେ ବଗିଚା ସାରା କୋଳାହଳ କରି ଏତେ ପ୍ରଜାପତି ଆସନ୍ତି କୁଆଡୁ ? ଦିନେ ଦିନେ ଖରା ନଇଁ ନଇଁ ଆସୁଥିବା ବେଳେ ଗୋଟାଏ ଏକୁଟିଆ ପ୍ରଜାପତିର ପିଛା ଧରେ । କିନ୍ତୁ ଫୁର୍ ଫୁର୍ ହୋଇ ମାଛିଅନ୍ଧାର ଭିତରେ କୁଆଡେ ଯେ ଉଭାନ୍ ହୋଇଯାଏ, ମୁଁ ତା'ର ପତ୍ତା ପାଏନାହିଁ ! ବସି ବସି ସ୍ୱପ୍ନ ଦେଖେ, ଏମାନେ ସମସ୍ତେ ବୋଧହୁଏ ଗୋଟାଏ ସୁଡ଼ଙ୍ଗ ଦେଇ ଚାଲିଯାଉଥିବେ ସେମାନଙ୍କର ନିଜସ୍ୱ ଗୋଟାଏ ବିରାଟ କଲୋନୀ ଭିତରକୁ ଓ ସକାଳ ହେଲେ ପୁଣି ବାହାରି ଆସୁଥିବେ । ଥରେ ଯଦି ତମେ ସ୍ୱପ୍ନରେ ଚାଲିଗଲ ପ୍ରଜାପତିଙ୍କର କଲୋନୀ ଭିତରକୁ ତା' ହେଲେ ଆଉ ତମର ପରବାଏ ନାହିଁ ।

ତା'ପରେ ତମର ଦିବାସ୍ୱପ୍ନକୁ ତମେ ଯେ କୌଣସି ରୂପ ଦେଇପାର । ଇଚ୍ଛାକଲେ ପ୍ରଜାପତିମାନେ ତାଙ୍କ ଭାଷାରେ କଥା କହି ପାରନ୍ତି ବା ଆମମାନଙ୍କ ଭାଷାରେ ମଧ କଥାବାର୍ତ୍ତା କରି ପାରନ୍ତି । ହଠାତ୍ ତମେ ସେମାନଙ୍କୁ ସାତ ଠାରୁ ବାର ବର୍ଷର ଛୋଟ ଝିଅ କରିନେଇ ପାର, ଯେଉଁମାନେ ଅନେକ ବର୍ଣ୍ଣିଳ ଫ୍ରକ୍ ପିନ୍ଧି ଏପଟ ସେପଟ ବୁଲୁଛନ୍ତି । ତାଙ୍କର ଡ଼ିନର୍ ଟେବୁଲ ମଧ ତମେ ଅନ୍ଦାଜ କରିପାର । ସେମାନେ ଘାସ ଉପରର ସକାଳେ ପଡ଼ିଥିବା ଶିଶିରକୁ ସୁପ୍ ପ୍ଲେଟରେ ଖାଉଛନ୍ତି ଓ କିଛି ମହୁ ହେଲା ସେମାନଙ୍କର ଡେସର୍ଟ ଡ଼ିସ୍ । ଇନ୍ ବିଟୁଇନ୍ ସେମାନେ ବୋଧହୁଏ ଖାଇବା ଉଚିତ୍ କିଛି ସବୁଜ ଶିଉଳି, ନ ହେଲେ କିଛି ଗୋଲାପ ଫୁଲର ନରମ ନରମ ପାଖୁଡା — ତାଙ୍କର ମେନ୍ ଡ଼ିସ୍ ଇତ୍ୟାଦି ଇତ୍ୟାଦି । ଦ୍ୱିପ୍ରହରର ଖରା ବ୍ୟାହତ ହୋଇ ମଉଳି ଯାଉଛି; କିନ୍ତୁ ତମେ ତଥାପି ବସି ରହିଛ ବିଅର ଗିଲାସ୍ ଧରି । ପ୍ରଜାପତିମାନଙ୍କର କଲୋନୀରୁ ଏତେ ଶୀଘ୍ର ଫେରାଯାଏ ନାଁ ।

କିନ୍ତୁ ଦିନ ସାଢ଼େ ଦୁଇଟା ସାରାପୃଥିବୀ ପକ୍ଷରେ ଏକ ମୁହୂର୍ତ୍ତ । ମନ୍ତ୍ରୀମାନଙ୍କୁ ବିଧାନସଭାର ଫ୍ଲୋର୍ ଉପରେ ଜବାବ୍ ଦବାକୁ ପଡିବ । ବ୍ୟବସାୟୀମାନଙ୍କ ପାଇଁ ସେଇ ଫ୍ଲାଇଟ୍‌ରେ ଚିଠି ଯିବାକୁଇ ପଡ଼ିବ ଓ ବିଜିନେସ ଏକ୍‌ଜିକ୍ୟୁଟିଭ୍‌ମାନଙ୍କୁ ଅମଲାତନ୍ତ୍ର ଅଫିସ୍

ଦରଜା ଆଗରେ ଠିଆହବାକୁଇ ପଡ଼ିବ ଓ ମେଡ଼ିକାଲ୍ ରିପ୍ରେଜେଣ୍ଟେଟିଭ୍‌ମାନଙ୍କୁ ତାଙ୍କର ଶେଷ – ସର୍ବଶ୍ରେଷ୍ଠ ଓ ଅବ୍ୟର୍ଥ ଔଷଧଟିକୁ ବିକିବାକୁଇ ପଡ଼ିବ । ତେଣୁ ଠିକ୍ ଏଇ ସମୟରେ ଏକାନ୍ତ ମୂର୍ଖ ନ ହେଲେ କିଏ ଯାଏ ପ୍ରଜାପତିମାନଙ୍କର କଲୋନୀକୁ । କିନ୍ତୁ ମୁଁ ଇଛାକରି ଯାଏ । କେବଳ ଏକ ବ୍ୟତିକ୍ରମ କରିବାପାଇଁ ନୁହେଁ । ମୁଁ ଯାଏ କାରଣ ହଏତ ଅବା ଶୋଇରହିଥିବା ପ୍ରଜାପତିମାନଙ୍କୁ ଦେଖିପାରିବି । ସେମାନେ ସମସ୍ତେ ଅନେକ ରଙ୍ଗର ରେଶମର ବିଛଣାରେ କ୍ଳାନ୍ତ ହେଇ ଘୁମେଇ ପଡ଼ିଥିବେ । ମୁଁ ସେଇ ନିଷିଦ୍ଧ କଲୋନୀ ଭିତରକୁ ବହୁବାର ଅନୁପ୍ରବେଶ କରିଛି । ଦେଖିଚି, ପ୍ରଜାପତିମାନେ ଶୋଇଥା'ନ୍ତି ଠିକ୍ ଓ ସେଠି ଅନେକ ପିକାସୋ, ଡ଼ିକ୍ଲାରୟ, ଡେଗାସ୍ ଓ ରେମ୍ବ୍ରାଁମାନେ ଅନେକ ଇଜେଲ୍ ପ୍ଲେଟ୍ ଓ ତୂଳୀ ଧରି ମହଜୁଦ୍ ଥା'ନ୍ତି । ସେମାନେ ଅନେକ ନୂଆ ନୂଆ ପ୍ରଜାପତିଙ୍କି ରଙ୍ଗ କରି ଚାଲିଥାଆନ୍ତି ଯେଉଁମାନେ ଆସନ୍ତା କାଲିର ସୂର୍ଯ୍ୟ ସହିତ ଜନ୍ମହେବେ । ଏଇ ପିକାସୋ ଆଉ ଡେଗାସ୍‌ମାନେ ମତେ ଦେଖି ପୂରାପୂରି ଫ୍ରିଜ୍ କରିଯାଆନ୍ତି, ଯେମିତି ଶିକାରୀ ଜନ୍ତୁ ଦେଖିଲେ ନୀରିହ ଶଶକମାନେ ସ୍ଥିର ହେଇ ଠିଆହେଇ ଥାଆନ୍ତି । ସେମାନଙ୍କର ଚିତ୍ର କରିବା ସ୍ଥଗିତ ରୁହେ । କିନ୍ତୁ ମୁଁ ଯେତେବେଳେ କଲୋନୀରୁ ଫେରିଆସେ, ସେତେବେଳେ ବୁଝିପାରିଥାଏ ଯେ ପ୍ରଜାପତିମାନଙ୍କର ପକ୍ଷୀରେ ଏତେ ରଙ୍ଗ ଆସେ କୁଆଡୁ ? ସେତେବେଳେ ଅବଶ୍ୟ ସଂଧ୍ୟା ଅନେକ ନଇଁ ଆସିଥାଏ ।

ସବୁ ସ୍ୱପ୍ନ ଭାଙ୍ଗି ଗଲାପରି ମୋର ଏ ସ୍ୱପ୍ନ ମଧ ଦିନେ ଭାଙ୍ଗିଗଲା, ଯେଉଁଦିନ ମୁଁ ଗୋଟାଏ ସ୍କାଇଲାର୍କ ଠାରୁ ଶୁଣିଲି ପ୍ରଜାପତିର କଲୋନୀ ନଥାଏ । ଗଛପତ୍ରରେ ବିଚରଣ କରୁଥିବା ଅସଂଖ୍ୟ ସଁବାଳୁଆମାନେ ଦିନେ ବୁଢ଼ା ହେଇଯାଆନ୍ତି ଏବଂ ସେମାନଙ୍କ ଚାରିପଟେ ଗୋଟିଏ ଖୋସା ତିଆରି କରନ୍ତି ଏବଂ ଦିନେ ସମୟ ଆସିଲେ ସେଇ ଖୋସା କାଟି ଉଡ଼ିଯାଆନ୍ତି ଏଇ ସୁନ୍ଦର ଚିତ୍ରିତ ପ୍ରଜାପତିମାନେ ।

ମୁଁ ଏଇ ସଂବାଦରେ ଖୁବ୍ ଦୁଃଖିତ ହେଇଥିଲି ଏବଂ ତତୋଧିକ ଦୁଃଖ ପାଇଥିଲି ଯେତେବେଳେ ଜାଣିଲି ଯେ ଏଇ ସଁବାଳୁଆ ଖୋସା ଗୁଡ଼ିକ କାଟି ପ୍ରଜାପତି ଉଡ଼ିଯିବାର ଠିକ୍ ଅବ୍ୟବହିତ ପୂର୍ବରୁ ସେଇ ଖୋସାଗୁଡ଼ିକ ଗରମ ପାଣିରେ ପକେଇ ତା' ଦିହରୁ ମଠା, ରେଶମ ଓ ଅନେକ ପ୍ରକାରର ସୂତା ବାହାର କରାଯାଏ, ଯାହାକୁ ଆମେମାନେ ପରିଧାନ ସ୍ୱରୂପ ବ୍ୟବହାର କରୁ । ପରିଧାନ ଆମର ପ୍ରୟୋଜନ; ତେଣୁ ଆମମାନଙ୍କୁ ପ୍ରଜାପତି ଭ୍ରୁଣ ହତ୍ୟା କରିବାକୁ ପଡେ । ତାହାହେଲେ କଅଣ ଭୁଲ୍ କରିଥିଲା ହିଟ୍‌ଲର୍ ଯେତେବେଳେ ସେ କନ୍‌ସେଣ୍ଟ୍ରେସନ୍ କ୍ୟାମ୍ପରେ ମରିଯାଉଥିବା ଶିଶୁମାନଙ୍କର ନରମ ଚମଡ଼ାରେ ବାଇବେଲ୍ ବନ୍ଧେଇ କରୁଥିଲା ?

ସ୍ୱପ୍ନ-ସ୍ୱପ୍ନ-ସ୍ୱପ୍ନ । ଅନେକ ସ୍ୱପ୍ନ । ମୁଁ ଯଦି ମୋର ସ୍ୱପ୍ନ ଗୁଡ଼ାକୁ ଠିକ୍ ଠିକ୍

ଖରିଦ୍‌ଦାର ଦେଖି ବିକ୍ରି କରିପାରୁଥାନ୍ତି, ତାହାହେଲେ ମୁଁ ଅନେକ ବଡ଼ଲୋକ ହୋଇଯାଆନ୍ତିଣି । ମୋର ଟୋପି ଭିତରେ ମୁଁ ଏପରି ସ୍ୱପ୍ନ ସବୁ ଗଚ୍ଛିତ ରଖିଛି, ଯାହାର ଯାହାର ମୂଲ୍ୟ ମିଲିଅନ୍ ଡଲାର୍ । କିନ୍ତୁ ହାୟ ! ଏଠି ସ୍ୱପ୍ନର ଗ୍ରାହକ ସଂଖ୍ୟା ଏତେ ସୀମିତ !

ବନସୀଖଡ଼ା ଧରି ମାଛ ମାରିବା ମୋର ଅନ୍ୟତମ ବିଳାସ ଥିଲା । ମୁଣ୍ଡ ଉପରେ ଗୋଟାଏ ଅତିକାୟ ଚିତ୍ରିତ ଛତା । ଗୋଟାଏ କ୍ୟାନ୍‌ଭାସ୍ ଚଉକି । ହାତରେ ମଗ୍ ଭର୍ତ୍ତି କୋଲମାରିଯାଉଥିବା ସେଇ ଅବଶ୍ୟମ୍ଭାବୀ ଥଣ୍ଡା ଥଣ୍ଡା ବିଅର୍ । ପାଟିରେ ବିଭାରିଆନ୍ ସିଗାର୍ । ଥୋପକୁ ପାଣିରେ ପକେଇ ଦେଇ ପୁଣି ହଠାତ୍ ଅନ୍ୟମନସ୍କ ହେଇଯାଏ । ପୋଖରୀସାରା ଭର୍ତ୍ତି ହେଇ ଯାଆନ୍ତି ରୂପା ପରି ଚକ୍ ଚକ୍ ମାଛ । ମୋ' ମନ ସେମାନଙ୍କ ସାଙ୍ଗରେ ପାଣିରେ ବୁଡ଼ିଯାଏ ଅନେକ ତଳକୁ । ମାଛମାନେ ଯେମିତି ଖେଳି ଖେଳି ଆଗେ ଆଗେ ବାଟ ଦେଖେଇ ମତେ ସେମାନଙ୍କର ଅନ୍ଦର ମହଲକୁ ନେଇଯାଉଛନ୍ତି । ସେଠି ମହଜୁଦ୍ ଥିବା ହୀରା, ନୀଳା, ମାଣିକକୁ ପଚାରେ କିଏ ? ସେଠି ଅଳସରେ ଶୋଇ ଶୋଇ ହାଇମାରୁଥାଆନ୍ତି ଅନେକ ସୁନ୍ଦରୀ ମତ୍ସ୍ୟକନ୍ୟାମାନେ । ବିଶ୍ୱାସ କର, ମତେ ସେମାନେ ଅନେକଥର ଡାକିଛନ୍ତି ସେମାନଙ୍କର ପ୍ରବାଳଦ୍ୱୀପରେ ଘର କରି ରହିଯିବା ପାଇଁ । ମୁଁ ଠିକ୍ ସିଦ୍ଧାନ୍ତ ଗ୍ରହଣ କଲାବେଳକୁ ସ୍ୱପ୍ନ ଭାଙ୍ଗିଯାଏ ଏବଂ ଦେଖେ ମୋର ବନ୍‌ସୀକଣ୍ଟା ଥୋପଟି ଖାଇ ନେଇ ମାଛମାନେ ଚାଲିଯାଇଛନ୍ତି । ଧରି ନିଆଯାଉ, ମୁଁ ସେଦିନ ସ୍ୱପ୍ନ ନ ଦେଖିଥିଲେ ଗୋଟାଏ ତିନି କେ.ଜି.ର ରୋହୀମାଛ ଧରିଥାଆନ୍ତି । କିନ୍ତୁ ମୋର ଏଇ ସ୍ୱପ୍ନ ପାଇଁ ସେଇ ରୋହୀ ମାଛଟା କଅଣ ଯଥେଷ୍ଟ କ୍ଷତିପୂରଣ ହେଇ ଥାଆନ୍ତା ?

ତମେ ତ ନୋଆର ଗଳ୍ପ ଜାଣ – ପ୍ରଳୟ ପୂର୍ବରୁ ତାକୁ କୁଆଡ଼େ ପରମ ପିତା ନିର୍ବାଚନ କରିଥିଲେ । ପ୍ରଳୟ ସମୟରେ ଜୀବନରକ୍ଷା କରିବାକୁ ନୋଆକୁ ସବୁ ଜୀବରୁ ଦୁଇଟିକରି ନିଜର ଡଙ୍ଗା ଭିତରେ ରଖିବାପାଇଁ ଆଦେଶ ଦେଇ ଭଗବାନ୍ ସାରା ପୃଥିବୀକୁ ଜଳମଗ୍ନ କରିଥିଲେ ଦେଢ଼ଶହ ଦିନ । ଆକାଶର ଝରକା ଯେତେବେଳେ ବନ୍ଦ ହେଲା, ସେତେବେଳେ ନୋଆର ଡ଼ଙ୍ଗା ସବୁ ପ୍ରାଣୀଗୁଡ଼ାକୁ ଧରି ଲାଗିଥିଲା ଆରରାରାଟ୍ ପର୍ବତର ଶିଖରରେ । ସେଠୁ ସମସ୍ତ ପୃଥିବୀ ଦେଖି ହଉ ନ ଥିଲା । ତେଣୁ ନୋଆ ଦଶମାସ ପରେ ତା'ର ଡ଼ଙ୍ଗାର ଝରକା ଖୋଲି ଗୋଟାଏ କାଉକୁ ସଂବାଦ ଆଣିବାକୁ ପଠେଇଥିଲେ ପାଣି କମିଲାଣି କି ନାହିଁ ଦେଖିବାପାଇଁ । ସେ ମଧ ତା' ପଛେ ପଛେ ଗୋଟାଏ କପୋତାକୁ ପଠେଇଥିଲେ । ସେ ତା'ର ପାଦ ରଖିବାପାଇଁ ପୃଥିବୀ ଉପରେ ଟିକିଏ ମାତ୍ର ସ୍ଥଳଭାଗ ନ ପାଇ ହତାଶ ହୋଇ ଫେରିଆସିଥିଲା ଏବଂ ପ୍ରତ୍ୟାଗତ କପୋତୀଟିକୁ ନୋଆ ତାଙ୍କର ସସ୍ନେହ ହାତ ବଢେଇ ଡ଼ଙ୍ଗା ଭିତରକୁ ନେଇ ଯାଇଥିଲେ । ସାତଦିନ ପରେ ପୁଣି ଥରେ

ସଂବାଦ ପାଇଁ ନୋଆ କପୋତୀଟିକୁ ପଠେଇଥିଲେ ଏବଂ ସେ ଯେତେବେଳେ ତା'ର ଚଞ୍ଚୁରେ ଗୋଟିଏ ଅଲିଭ୍ ପତ୍ର ଧରି ଫେରି ଆସିଥିଲା, ନୋଆ ଜାଣିପାରିଥିଲେ ଯେ ପୃଥିବୀ ପୃଷ୍ଠରୁ ପାଣି କମୁଛି । ଆହୁରି ସଂବାଦ ଆଶାରେ ନୋଆ ତୃତୀୟ ଥରପାଇଁ କପୋତୀଟିକୁ ବାହାରକୁ ପଠେଇଥିଲେ । ସେ କପୋତୀଟି ତା'ର ଯାତ୍ରା ଆରମ୍ଭ କରିଥିଲା ଅନେକ ସକାଳୁ ଖୁବ୍ ବଡ଼ି ଭୋର୍‌ରୁ । ସଂଧ୍ୟା ପର୍ଯ୍ୟନ୍ତ ମଧ୍ୟ ସେ ଫେରିପାରି ନଥିଲା । ନୋଆ ଦିନପରେ ଦିନ ଅପେକ୍ଷା କଲେ, କିନ୍ତୁ ତଥାପି ସେ କପୋତୀଟି ଆଉ ଫେରିଲା ନାହିଁ ଏବଂ ସେହି କପୋତୀର ଭ୍ରମଣ କାହାଣୀ ଆଜି ଆମମାନଙ୍କ ପାଇଁ ଏକ କିମ୍ବଦନ୍ତୀ ହେଇଯାଇଛି ।

ବର୍ଷାଧୌତ ସୁନୀଳ ଆକାଶକୁ ଉଠି ସେ କପୋତୀଟି ଏକ ଅଚିନ୍ତନୀୟ ଅସୀମତାର ସ୍ୱାଦରେ ବିହ୍ୱଳ ହୋଇ ପଡ଼ିଥିଲା । ତଳେ ଏକ ବିରାଟ ଜଳସ୍ଥଳୀ ଚକ୍‌ଚକ୍ କରୁଥିଲା ଏବଂ ଜଙ୍ଗଲ ସବୁ ଦେଖାଯାଉଥିଲେ ପୃଥିବୀ ଦେହରେ ଲାଗିରହିଥିବା ନେଳି ନେଳି ଶିଉଳି ପରି । ସକାଳର ଉଜ୍ଜ୍ୱଳ ଆଲୁଅରେ ଫୁଲମାନେ ଫୁଟିଥିଲେ । ଏଇ ସମୟରେ ପ୍ରଥମ ସୂର୍ଯ୍ୟୋଦୟର ଆଦ୍ୟ ଇଙ୍ଗିରେ ସମୁଦ୍ର ଲାଲେଲାଲ୍ ହେଇଯାଇ ଥିଲା । ଏହି ଅନିର୍ବଚନୀୟ ଦୃଶ୍ୟରେ କପୋତୀଟି ବିହ୍ୱଳ ହୋଇ ପୃଥିବୀ ଉପରେ ଉଡ଼ିଚାଲିଥିଲା । ଅନେକ ସମୟ ଉଡ଼ି ଉଡ଼ି ତା'ର ମନେ ହେଲା, ସେ ଯେପରି ତା'ର ସ୍ଥୂଳ ଶରୀରର ସତ୍ତା ହରେଇ ବସି ଏକ ବହମାନ ସ୍ୱପ୍ନରେ ପରିଣତ ହେଇଯାଇଛି । ସେ ଇତିମଧ୍ୟରେ ନୋଆ ଏବଂ ନୋଆଙ୍କ ଜାହାଜର ଶ୍ୱେତଶ୍ମଶ୍ରୁ କ୍ୟାପ୍‌ଟେନ୍‌ଙ୍କ କଥା ସଂପୂର୍ଣ୍ଣ ବିସ୍ମୃତ ହୋଇଥିଲା । ସେ ଭୁଲିଯାଇଥିଲା, ସେ କାହିଁକି ଆସିଚି ଓ ଭୁଲିଯାଇଥିଲା ଯେ ତା'କୁ ଫେରିବାକୁ ପଡ଼ିବ ଆରାରାଟ୍ ପର୍ବତର ଚୂଡ଼ାକୁ, ଯେଉଁଠାରେ ନୋଆ ତାକୁ ଅପେକ୍ଷାମାଣ ।

ପରମପିତାଙ୍କର ଏହି ସ୍ୱପ୍ନ-ବିଳାସୀ ଅବିଶ୍ୱସ୍ତ ସଂବାଦ-ବାହକ ନିଜର ସ୍ୱପ୍ନରେ ଆତ୍ମହରା ହେଇ ଉଡ଼ି ଚାଲିଲା । ଦିନେ ତା'ର ଡେଣା କ୍ଳାନ୍ତ ହେଇପଡ଼ିଲା ଏବଂ ସେ ଅନିଚ୍ଛାସତ୍ତ୍ୱେ ପୃଥିବୀକୁ ଓହ୍ଲେଇ ନୀଳବନାନୀ ଘେରା ଏକ ବୃକ୍ଷ କୋଟରରେ ଆଶ୍ରୟ ନେଲା । ପୁଣି ସମୟ ବହିଚାଲିଲା । ସେ ବଣରେ କେହି ମଣିଷ ନଥିଲେ । ସେ ବଣର ସବୁଜିମା ଓ ଅଖଣ୍ଡ ନୀରବତାରେ ସେହି କପୋତୀଟି ଦ୍ୱିତୀୟ ଥର ପାଇଁ ସ୍ୱପ୍ନାହତ ହେଲା । ପୁଣି ସମୟ ବହିଚାଲିଲା, କିନ୍ତୁ କପୋତୀଟି ନୋଆର ଜାହାଜକୁ ଆସିଥିବାରୁ ଥିଲା ମୃତ୍ୟୁହୀନ । ସେ ଥିଲା ଭଗବାନଙ୍କର ସୁନିର୍ବାଚିତ ଅନ୍ୟତମ ଅମୃତ ପ୍ରାଣୀ ।

କିନ୍ତୁ ଧୀରେ ଧୀରେ କପୋତୀଟି ମଣିଷର ଉପସ୍ଥିତି ସଂପର୍କରେ ସଚେତନ ହେଲା । କେତେବେଳେ କାଠ କଟାର ଶବ୍ଦ, କେତେବେଳେ ପ୍ରେମିକପ୍ରେମିକାଙ୍କର

ମଧୁର ଗୁଞ୍ଜନ ଏବଂ କେତେବେଳେ ଶିଶୁମାନଙ୍କର ଅର୍ଥହୀନ କୋଳାହଳ, ଏକ ଗଭୀର ସ୍ୱପ୍ନାଚ୍ଛନ୍ନ ଅବସ୍ଥାରେ ମଧ କପୋତୀଟିକୁ ସ୍ମରଣ କରାଇ ଦେଉଥିଲା ମନୁଷ୍ୟମାନଙ୍କର ଅତି ନିକଟ ଉପସ୍ଥିତି ।

କିନ୍ତୁ ଦିନେ ଏକ ଗଭୀର କୋଳାହଳ ତା'ର ସ୍ୱପ୍ନ ଭାଙ୍ଗିଦେଲା । ମନେହେଲା ପୃଥିବୀ ଯେପରି ଦୁଇଭାଗ ହେଇଯାଉଛି । ବଡ଼ ବଡ଼ ଖଣ୍ଡ ଖଣ୍ଡ ମାଟି ଆକାଶକୁ ଉତ୍‌କ୍ଷିପ୍ତ ହେଲା । ମନୁଷ୍ୟମାନେ ପରସ୍ପର ପ୍ରତି କ୍ଷେପଣାସ୍ତ୍ର ପ୍ରୟୋଗ କଲେ । ମେସିନ୍ ମୁହଁରୁ ନିଆଁ ଉଦ୍‌ଗୀରିତ ହେଲା ।

ଅବିଳମ୍ୱେ କପୋତୀଟି ଏକ ନୂତନ ନୀଡ଼ର ସଂଧାନରେ ତା'ର ପକ୍ଷ ଉତ୍ତୋଳନ କଲା । ସେ ପୃଥିବୀର ଏକପ୍ରାନ୍ତରୁ ଅନ୍ୟପ୍ରାନ୍ତ, ଟିକିଏ ଶାନ୍ତି ଜାଗାରେ ନୀଡ଼ ପାତିବା ପାଇଁ ଉଡ଼ିବୁଲିଲା । କାହିଁ ଶାନ୍ତି ? ମନୁଷ୍ୟ ମନୁଷ୍ୟ ଭିତରେ ଯୁଦ୍ଧର ତାଣ୍ଡବଲୀଳା । ଏକ ଅଗ୍ନି-ସମୁଦ୍ର ଯେପରି ଉପରକୁ ଉତ୍ତୋଳିତ ହେଇଛି ଏବଂ ପୃଥିବୀର ଚାରିପଟେ ରକ୍ତର ବନ୍ୟା । ସେତେବେଳେ କପୋତୀଟିର ମନେ ପଡ଼ିଲା ଯେ, ସେ ଚଞ୍ଚୁରେ ଏକ ଅଲିଭ୍ ପତ୍ର ବହନ କରି ପରମ ପିତାଙ୍କ ପାଖକୁ ଫେରିଯିବା ପାଇଁ ପ୍ରତିଶ୍ରୁତ । କିନ୍ତୁ ତଥାପି ତା'ର ଶୀର୍ଣ୍ଣ ପାଦ ଦୁଇଟିକୁ ଆଶ୍ରୟ ଦବାପାଇଁ ପୃଥିବୀରେ ଏତେ ଟିକେ ମଧ ସ୍ଥାନ ନଥିଲା ।

ସେ କପୋତୀଟିକୁ କୌଣସି ମନୁଷ୍ୟ ଦେଖିନାହିଁ । ସିଏ ସେଇ କିମ୍ୱଦନ୍ତୀର କପୋତୀ, ଯିଏ ଏକ କ୍ଲାନ୍ତ ପକ୍ଷ ନେଇ ଆମର ମୁଣ୍ଡ ଉପରେ ଅହୋରାତ୍ର ଘୂରି ବୁଲୁଛି । କେତେବେଳେ କେମିତି ମଧରାତ୍ରରେ ଯେତେବେଳେ ଚୁପ୍ ଚାପ୍ ପଶ୍ଚିମ ଆକାଶରେ ଚନ୍ଦ୍ର ଅସ୍ତ ଯାଉଥାଏ, ସେତେବେଳେ ଯଦି କାହାର ହଠାତ୍ ନିଦ ଭାଙ୍ଗିଯାଏ, ସେ ହଠାତ୍ ଶୁଣିପାରିବ ସେଇ କପୋତୀଟି ତା'ର ପକ୍ଷ ପିଟି ପିଟି ଏକ କ୍ଲାନ୍ତିହୀନ ଅସୀମର ଯାତ୍ରାରେ ଚାଲିଛି । ସେହି କପୋତୀଟି ଯେପରି ଚାଲିଛି ମନୁଷ୍ୟ ସମାଜର ସମସ୍ତ ନିର୍ଯ୍ୟାତନା ବହନ କରି କରି ଏବଂ ତଥାପି ଉଡ଼ି ଚାଲିଛି ସେଇ କପୋତୀ ସ୍ୱର୍ଗ ଆଉ ପୃଥିବୀର ମଧସ୍ଥଳରେ । ଏବଂ ଆଜି ମଧ ଠିକ୍ ହଜାରବର୍ଷ ତଳ ପରି ପୃଥିବୀ ଅପେକ୍ଷା କରି ରହିଛି ହୁଏତ କେବେ କାହାର ହସ୍ତ ପ୍ରସାରିତ ହେଇ ଏଇ କ୍ଲାନ୍ତ, ଅବସନ୍ନ-ସ୍ୱପ୍ନ-ବିଳାସୀ ଚିର ଉଡ୍ଡୀୟମାନ କପୋତୀଟିକୁ ଆଶ୍ରୟ ଦବ ।

ଦେଖିଲ ତ ! ସ୍ୱପ୍ନ ଦେଖିବାରେ ବିପଦ । ତମକୁ କାମ ଦିଆଯାଇ ଥିଲା; ତମେ ପୃଥିବୀର ପାଣି ମାପି ଥଣ୍ଟରେ ଗୋଟିଏ ଅଲିଭ୍ ପତ୍ର ଧରି ସୁନାପୁଅ ପରି ଡଙ୍ଗା ଭିତରକୁ ଫେରି ଆସିବାକୁ । ତମକୁ କିଏ କହିଥିଲା ଏକ ଅସୀମତାର ସ୍ପର୍ଶରେ

ବିହ୍ୱଳିତ ହବା ପାଇଁ ? ତମକୁ କିଏ କହିଥିଲା ଏକ ପ୍ରଳୟୋଉର ପ୍ରଥମ ସୂର୍ଯ୍ୟୋଦୟର ଲାଲିମାରେ ମୁଗ୍‌ଧ ହବାକୁ ?

ସ୍ୱପ୍ନ ଦେଖିବାରେ ମଧ ଗଭୀର ବିପଦର ସୂଚନା ନିହିତ ଅଛି । କିନ୍ତୁ କୁହ ସୁଜାତା, ଯେତେବେଳେ ଏକ ପ୍ରଳୟ-ପୟୋଧିର କ୍ଷୀରସମୁଦ୍ରରେ ସ୍ୱୟଂ ଭଗବାନ ବଟପତ୍ରରେ ଭାସମାନ, ସେତେବେଳେ ଯଦି ଟିକଟ୍ କରାଯାଇ ଥାଆନ୍ତା ତମେ ସେଇ କ୍ଷୀର-ସମୁଦ୍ରରେ ପ୍ରଥମ ସୂର୍ଯ୍ୟୋଦୟ ଦେଖିବା ପାଇଁ ତମର ବ୍ୟାଙ୍କରେ ଥିବା ସବୁଯାକ ଟଙ୍କା ଅଜାଡ଼ି ଦେଇ ନଥାନ୍ତ ? ମୁଁ କହିବି, ମୋର ଇହଜନ୍ମ, ପରଜନ୍ମ ସବୁର ବିନିମୟରେ ମୁଁ ସେଇ ପ୍ରଥମ ସୂର୍ଯ୍ୟୋଦୟ ଦେଖିବି । ମୁଁ ଦେଖିବି ଯାହା ସେଦିନ ଦେଖିଥିଲା ନୋଆର ସଂବାଦବାହୀ କପୋତୀ । ଆଜିର ନୀଡ଼ହରା, କ୍ଲାନ୍ତ ଅବସନ୍ନ ସେଇ ଅଭିଶପ୍ତ କପୋତୀ କାହାର କରୁଣା ହୁଏତ ଉଦ୍ରେକ କରିପାରୁ ଥାଏ, କିନ୍ତୁ ମୁ ତାକୁ ଈର୍ଷା କରେ ରାତିମଦ୍ ।

ବିଚରା କପୋତୀ ! ତମର ଯଦି କେବେ ମଧରାତ୍ରରେ ହଠାତ୍ ନିଦ ଭାଙ୍ଗିଯାଏ, ତମର ଚାରିପଟରେ ବାୟୁମଣ୍ଡଳ ଯଦି ଥାଏ ଚୁପ୍ ଚାପ୍, ଏବଂ ଯଦି ସେତେବେଳେ ବିବର୍ଣ୍ଣ ଚନ୍ଦ୍ର ଅସ୍ତ ଯାଉଥାଏ, ଏବଂ ତମେ ଯଦି ଦେଖିବାକୁ ପାଅ କୌଣସି କପୋତୀ ତମର ଗବାକ୍ଷ ଦେଇ ପବନରେ ମୃଦୁ ବେପଥୁ ସୃଷ୍ଟିକରି ଉଡ଼ିଯାଉଛି, ତମେ ତମର ଶୀର୍ଣ୍ଣ ହସ୍ତ ପ୍ରସାରିତ କରିବାକୁ କୁଣ୍ଠାବୋଧ କରିବ ନାହିଁ । ତମର ସେଇ ଶୀର୍ଣ୍ଣ ମଣିବନ୍ଧ ଉପରେ ତମେ ତ ସୁବର୍ଣ୍ଣ କଙ୍କଣର ଗୁରୁଭାର ବହନ କର, ଗୋଟାଏ କପୋତୀର କେତେ ବା ଓଜନ ।

ସୁଜାତା, ଯଦି ଜୀବନରେ କେବେ ତମେ ଏଇ କପୋତୀ ପରି ଉଡ଼ି ବୁଲିବାରେ କ୍ଳାନ୍ତ ହେଇପଡ, ଜୀବନରେ ଯଦି କେବେ ଅନୁଭବ କର ତମର ମଧୁକ୍ଷରା କ୍ଷୁଦ୍ରାୟତନ ଦୁଇଟି ସୁନ୍ଦର ଓଠରୁ ମଧୁ ନିଃଶେଷ ହୋଇ ଆସୁଛି (ଭଗବାନ କରନ୍ତୁ, ତାହା ନହଉ) ତାହେଲେ ମତେ ସଂବାଦ ଦବ । ମୁଁ ପିଠିପଟେ ସ୍ୱପ୍ନର ଗଣ୍ଠିରା ପକେଇ ବୁଲୁଚି ଦୁଆରକୁ ଦୁଆର । କେବେ ହୁଏତ ଧୂ ଧୂ ଦ୍ୱିପ୍ରହରର ଖରାରେ ତମେ ଶୁଣିବ କିଏ ଜଣେ ଆଣ୍ଠୁଏ ଧୂଳି ଗୋଡ଼ରେ ରାସ୍ତାରେ ଡାକି ଡାକି ଯାଉଚି ସ୍ୱପ୍ନ-ନବ-ସ୍ୱପ୍ନ-ଅ-ଅ-ଅ ।

ମୋର ଷଣ୍ଢ ମୋ'ର ଗଣ୍ଠିଲି ଭିତରେ କେବଳ ସୀମିତ ନୁହେଁ । ମୋ'ର ଗୋଟିଏ ଛୋଟ ନୀଡ଼ ଅଛି, ଯାହାର ଅଗଣାରେ ମୁଁ ଅନେକ ସ୍ୱପ୍ନର ଚାରା ଲଗେଇଛି ।

ତମର ଏକାନ୍ତ

ମୁଁ

